ଶ୍ରୀ

# ପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ



ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

# ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର
# ଇତିହାସ ଓ ମାହାତ୍ମ୍ୟ

ଲେଖକ
ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

ପ୍ରଥମ ମୁଦ୍ରଣ
୧୯୫୩

ପ୍ରକାଶକ
ଶ୍ରୀ ପ୍ରସନ୍ନକୁମାର ଆଚାର୍ଯ୍ୟ
ଖରସୁଆଁ, ସିଂହଭୂମ

ମୂଲ୍ୟ—ଏକଟଙ୍କା ମାତ୍ର

# ପ୍ରଶଂସାପତ୍ର

ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ ସାଙ୍କେତିକ ପୁସ୍ତକ ଦେଖି ମୁଁ ପରମାନନ୍ଦ ଉପଲବ୍ଧି କଲି । ଏଥିରେ ଯଥାଯଥ ବୃତ୍ତିଶୀଳ ପୁରାଣ ପ୍ରମାଣମାନଙ୍କୁ ନିପୁଣ ଶରଣଦନ୍ତ କରି ବର୍ଷୀୟାନ ପୂଜ୍ୟ ପଣ୍ଡିତ ଆସ୍ତିକ ମୂର୍ଦ୍ଧନ୍ୟ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ମହାଶୟ ଯେ ଲେଖନୀ·ଚାଳନାରେ ଗତି କରିଅଛନ୍ତି, ତାହା ଅତି ଶ୍ଳାଘନୀୟ ଓ ଏକାନ୍ତ ଅପେକ୍ଷିତ ବିଷୟ ।

ଅନାଦି ନାରାୟଣଙ୍କର ଏକ ପ୍ରାଚ୍ୟଧାମ ପୁରୁଷୋତ୍ତମ ଏବଂ ଦେବପୂଜିତ ଲୋକବନ୍ଦିତ ଶ୍ରୀ ନୀଳମାଧବଙ୍କ ଇନ୍ଦ୍ରନୀଳମଣି ବିଗ୍ରହ ବ୍ରହ୍ମାଙ୍କ ପ୍ରଥମ ପରାର୍ଦ୍ଧାନ୍ତେ ଅନ୍ତର୍ହିତ ହେବାପରେ ଭକ୍ତବର ପରମବୈଷ୍ଣବ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କର ଭଗବଦାଦେଶରେ ସ୍ୱୀୟ ଅତ୍ର ଆଗମନ । ଦେବର୍ଷି ନାରଦଙ୍କ ଆଦେଶତଃ ବହୁ ଯଜ୍ଞାନୁଷ୍ଠାନ ପରେ ଦିବ୍ୟ ଦାରୁବ୍ରହ୍ମଙ୍କ ଚତୁର୍ଦ୍ଧା ଆବିର୍ଭାବପ୍ରଭୃତି ପୁରାଣ ବର୍ଣ୍ଣିତ ବିଷୟମାନ ଯାହା ସବୁ ପ୍ରମାଣ ସହିତ କାଳ ନିର୍ଦ୍ଦେଶପୂର୍ବକ ନିର୍ଣ୍ଣିତ କରାଯାଇଅଛି, ତାହା ସବୁ ଅଭ୍ରାନ୍ତ ଆସ୍ତିକମାନଙ୍କର ଏଥିରେ ବିକଳ୍ପ ସମ୍ଭାବନାୟ ନୁହେ ।

ବହୁତ ଐତିହାସିକ ଲେଖକ ଏ କ୍ଷେତ୍ର ଓ ଦାରୁମୂର୍ତ୍ତିମାନଙ୍କ ବିଷୟରେ ପୂର୍ବରୁ ପ୍ରକାଶ କରିଥିବା ପୁସ୍ତକମାନଙ୍କୁ ଦେଖି ଲୋକଙ୍କର ସନ୍ଦେହ ଜାଗରୂକ ରହିଅଛି, ଯେଣୁ ସେମାନେ (ପ୍ରାୟ ଲେଖକ-ମାନଙ୍କର ଲୋକ ସମ୍ଭାବନା ଓ) ସ୍ୱୀୟ ପ୍ରବୃତ୍ତିନୁସାରେ କଳ୍ପିତ କଳ୍ପନା କରି ସଂସ୍କୃତ ପୁରାଣ ପ୍ରମାଣ ବିରୁଦ୍ଧ ତଥ୍ୟ ପ୍ରକାଶ କରିବା ହେତୁ ଅବିରଳ ବିକଳ୍ପଜାଳ ସମ୍ପାଦକ ହୋଇଅଛନ୍ତି । "ଅଚିନ୍ତ୍ୟାଃ ଖଳୁ ଯେ ଭାବା ନ ତାଂସ୍ତର୍କେଣ ଯୋଜୟେତ୍" । ପରମାର୍ଥତଃ ଲୋକାତୀତଧାମ ବିଷୟ ଲୌକିକ ଯୁକ୍ତି ଓ ସମ୍ଭାବନା ବହୁ ଉତ୍କୃଷ୍ଟ; ଏଣୁ ପ୍ରମାଣ ପରିଷ୍କୃତ ଏହି ଅଭିନବ ପୁରୁଷୋତ୍ତମ କ୍ଷେତ୍ର ଇତିହାସ ପୁସ୍ତକ ଦେଖିଲେ ଆସ୍ତିକ ଜନତା ନିଃସନ୍ଦିଗ୍ଧଭାବେ ଉକ୍ତ ସନାତନ କ୍ଷେତ୍ର ଓ ଅଲୌକିକ ଦାରୁମୂର୍ତ୍ତିମାନଙ୍କରେ ନିଜ ନିଜର ଆଧ୍ୟାତ୍ମିକ ଭଗବଦ୍ ପ୍ରପତ୍ତି ପୋଷଣ କରି କୃତ କୃତ୍ୟତା ଲାଭ କରିବେ । ଏହା ମୋର ଦୃଢ଼ ପ୍ରତ୍ୟୟ । ଇତି ।

ପଣ୍ଡିତ ଶ୍ରୀ ଆନନ୍ଦମିଶ୍ର ଶର୍ମା
ପ୍ରଧାନାଚାର୍ଯ୍ୟ ଲବ୍ଧାବସର ଧର୍ମଶାସ୍ତ୍ରାଧ୍ୟାପକ
ପୁରୀ ସଂସ୍କୃତ କଲେଜ

ତା ୨୯-୮-୫୩
ପୁରୀ

*Pandit Baikoli Jyotisbisarada,*
**WELL KNOWN PREDICTOR OF QUAKES**
Compiler of
Jyotissar Ratnabalee, Jataka Darpana Etc.
Translator of
BRUHAT JATAKA, PHALADEEPIKA ETC.

**KHALLIKOT**
(Ganjam Dist)

*Dated* 12-9-1953

ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ମହୋଦୟ
ମହାସନ୍ନିଧାନେଷୁ—
ନମସ୍କାରାନ୍ତେ

ମହାଭାଗ,

ଆପଣଙ୍କ ରଚିତ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ ପାଠ କରି ଅସୀମ ଆନନ୍ଦ ଉପଲବ୍ଧି କଲି । ଆପଣ ଏହି ପରିଣତ ବୟସରେ ଅପାର ଶ୍ରମ ସ୍ୱୀକାର ପୂର୍ବକ ପ୍ରଭୁ ଜଗନ୍ନାଥଙ୍କ ବିଷୟ ରଚନାରେ ପ୍ରବୃତ୍ତ ହୋଇ ନିଜର କର୍ତ୍ତବ୍ୟ ସୁଚାରୁରୂପେ ପାଳନ କରି ଅଛନ୍ତି । ପ୍ରଭୁ ଆପଣଙ୍କୁ ବହୁକାଳ ସୁସ୍ଥ ଶରୀରରେ ବଞ୍ଚାଇ ରଖି ଏହିଭଳି ସଦ୍‌ଗ୍ରନ୍ଥ ରଚନାରେ ବ୍ରତୀ କରାନ୍ତୁ ଏହାହିଁ ମୋର ଜଗଦୀଶଙ୍କ ପଦାରବିନ୍ଦରେ ନିବେଦନ ।

ଗ୍ରନ୍ଥଟି ବଡ଼ ଉପାଦେୟ ହୋଇଅଛି । ଶାସ୍ତ୍ରୀୟତଥ୍ୟ, କିମ୍ବଦନ୍ତୀ ବାହାରେ ବହୁ ନୂତନ ଗବେଷଣା ପୂର୍ଣ୍ଣ ବିଷୟ ଉଲ୍ଲେଖ କରି ଆପଣ ଓଡ଼ିଆ ଜାତିର ମହତ୍ ଉପକାର କରି ପାରିଛନ୍ତି । ଏପରି ଗ୍ରନ୍ଥର ଓଡ଼ିଆ ସାହିତ୍ୟରେ ବହୁତ ଅଭାବ ରହିଛି । ମୋର ଆଶା ପ୍ରତ୍ୟେକ ଓଡ଼ିଆ ଏ ଗ୍ରନ୍ଥର ସମ୍ୟକ୍ ଆଦର କରିବେ ।

ଆପଣଙ୍କର
ଶ୍ରୀ ବାଇକୋଳି ଜ୍ୟୋତିଷ ବିଶାରଦ
୧୨ । ୯ । ୫୩

I have attentively read with pleasure the book entitled 'Sri Purusottam Kshetrara Itihas O Mahatmya' written in Oriya by Pandit Krushnachandra Acharya of Kharaswan who has taken great pains in collecting meterials for his books from whichever source possible by reading a large number of authoritative literatures relating to the subject matter There are already many books on this subject or similar subjects dealing with the history of Jagannath. The justification for the publication of this book lies in its special feature in that the writer has rigourously followed Pouranic facts and traditions which are in full agreement with the Puranas. There are occasional references to the Vedas in the book and thus the writer has tried to establish that Purusottam Kshetra is co-existent with the beginning of creation, it has unparallelled greatness and importance and its religious sanctity is unquestionable. The writer has strongly ruled out the theories of modern historians as to Buddhistic origin and element in Lord Jagannath. He has departed from populor traditions such as the marriage of Vidyapati, a Brahmin, with the daughter of Viswabasu, the Savar King, for the fulfilment of his mission to localise and pay a visit to Nilamadhaba. He has rejected, giving convincing reasons, the wrong notion of people that the images are incomplete and deformed and that Balavadra is Baldev, Jagannath is Sri Krushna and Subhadra is their sister as we find in the Mahabharat. So it will be clear that the writer really depricates the modern tendency of people to distort facts with the object of making their writings popular. The writer has offered some explanations for the obscene pictures found on the body of the temple. In addition to the above the book deals in detail with all that one would like to know about the Temple of Lord Jagannath, the rituals and festivals that are observed here and an account of various Tirthas and several Gods and Goddesses that are being worshipped in different parts of this famous dham or religious centre. I have not the least doubt that this book will be highly appreciated by the orthodox section of its readers who have really got a religious bent of mind. Even to those who are not much interested in religion and sanctity, the book will certainly supply a good deal of important information about Puri. It cannot be denied that the book has removed a long felt want and so it deserves wide circulation.

Janmastami
31-8-53

K. M. Dwivedi
Retired Principal,
S. C. S. College, Puri

# 'ସମାଜ'ର ଅଭିମତ

'ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ' ବହି ସମ୍ପର୍କରେ ଗତ ୨୫ । ୭ । ୫୩ ଶନିବାର ଦିନ 'ସମାଜ'ରେ ନିମ୍ନଲିଖିତ ଅଭିମତ ପ୍ରକାଶ ପାଇଥିଲା—

"......ହିନ୍ଦୁ ଜଗତର ପୁଣ୍ୟତୀର୍ଥ ମୁକ୍ତିଧାମ ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଶାସ୍ତ୍ର ଓ ପୁରାଣସମ୍ମତ ମାହାତ୍ମ୍ୟ ଓ ଇତିହାସ ଏଥିରେ ବର୍ଣ୍ଣନା କରାଯାଇଛି । ଏହା କାର୍ତ୍ତିକ ଶଙ୍ଖକ୍ଷେତ୍ର ବୋଲି ପ୍ରସିଦ୍ଧି ଲାଭ କରିଛି, ବିବରଣ ସଙ୍ଗେ ସଙ୍ଗେ ଗୋଟିଏ ସୁନ୍ଦର ନକ୍ସାରେ ତାହାର ପରିଚୟ ଦିଆଯାଇଛି । ଏହା ଧର୍ମପ୍ରାଣ ତଥା ଐତିହାସିକ ଯଥେଷ୍ଟ ଉପାଦାନ ଯୋଗାଇବ । ପଣ୍ଡିତ ମହାଶୟ ଏହି ପୁସ୍ତକ ସଙ୍କଳନ କରି ଓଡ଼ିଆ ସାହିତ୍ୟର ପ୍ରଭୂତ ଉପକାର ସାଧନ କରିଛନ୍ତି ।"

ଓଁ ତତ୍ ସତ୍

ଶ୍ରୀଗଣେଶାୟ ନମଃ

# ଭୂ ମି କା

ମୁକ୍ତିଧାମ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶାଶ୍ୱତ ଅର୍ଥାତ ସନାତନ ହେତୁ ଭୂମଣ୍ଡଳରେ ତାହାର ସମଧିକ ବୈଶିଷ୍ଟ୍ୟ ଓ ବୈଚିତ୍ର୍ୟ ରହିଅଛି । ମାତ୍ର ତାହାର ଇତିହାସ ସମ୍ବନ୍ଧରେ ନାନାବିଧ କାଳ୍ପନିକ କଥା ପୁସ୍ତକମାନଙ୍କରେ ପ୍ରକାଶ ପାଇଥିବାରୁ ଓ ସେ ସବୁରେ ପରସ୍ପର ସାମଞ୍ଜସ୍ୟ ନ ଥିବା ହେତୁ ଜନସମାଜରେ ସେ ସମ୍ବନ୍ଧରେ ପ୍ରକୃତ ତଥ୍ୟ ପ୍ରକାଶ ପାଉନାହିଁ । ଅନ୍ତର୍ଯ୍ୟାମୀ ନୀଳାଚଳବିହାରୀଙ୍କ ପ୍ରେରଣାରୁ ମୁଁ ପ୍ରକୃତ ଇତିହାସ ପ୍ରକାଶ କରିବା ପାଇଁ ଋଷି-ପ୍ରଣୀତ ସଂସ୍କୃତ ଗ୍ରନ୍ଥମାନଙ୍କ ଆଲୋଚନାରେ ପ୍ରବୃତ୍ତ ହେଲି । ମହର୍ଷି ବେଦବ୍ୟାସଙ୍କ ପ୍ରଣୀତ ଅଷ୍ଟାଦଶ ମହାପୁରାଣ ଅନ୍ତର୍ଗତ ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଉତ୍କଳ ଖଣ୍ଡ—ଯହିଁରେ ଅଠାବନ ଅଧ୍ୟାୟରେ ଏ ସବୁର ସବିଶେଷ ବର୍ଣ୍ଣନା କରାଯାଇଅଛି ଏବଂ ଯେ ସବୁ ସ୍ୱତଂ ସମ୍ବନ୍ଧୋକ୍ତ ନୀଳାଦ୍ରି ମହୋଦୟ ଓ ତନ୍ତ୍ର ଦ୍ୱାରା ସମର୍ଥିତ ହୋଇଅଛି—ଅବଲମ୍ବନରେ ଏହି କ୍ଷେତ୍ରର ପ୍ରକୃତ ଇତିହାସ ଲେଖି ପ୍ରକାଶ କରିବାକୁ ଉଦ୍ୟତ ହେଲି । ସୌଭାଗ୍ୟକ୍ରମେ ନୀଳାଚଳବିହାରୀଙ୍କ କରୁଣାରୁ ଗତ କେତେକ ମାସ ମୁକ୍ତିଧାମରେ ଅବସ୍ଥାନ କରିବାର ସୁଯୋଗ ମୋତେ ମିଳିଥିଲା । ସେହି ସମୟରେ ସେଠାର କତିପୟ ବିଦ୍ୱାନ୍ ପଣ୍ଡିତ ତଥା ଧର୍ମପରାୟଣ ବୟୋବୃଦ୍ଧ ଲୋକଙ୍କ ସହ ଆଲୋଚନାରେ ପ୍ରବୃତ୍ତ ହୋଇଥିଲି । ଯାହାହେଉ ଏହି ଆଲୋଚନାର ସୁଯୋଗ ସର୍ବୋପରି ଦାରୁବ୍ରହ୍ମଙ୍କ ଅପାର କରୁଣା ଲାଭ କରି ପୂଣ୍ୟକ୍ଷେତ୍ରରେ ଥାଇ "ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଇତିହାସ

ଓ ମାହାତ୍ମ୍ୟ" ନାମକ ଏହି ଗ୍ରନ୍ଥ ସଂକଳନ କରିବାକୁ ସମର୍ଥ ହୋଇଛୁ । ଗ୍ରନ୍ଥ ସଂକଳନ ସମୟରେ ଏ ସମ୍ବନ୍ଧୀୟ ଅନେକ କିମ୍ବଦନ୍ତୀ ମଧ୍ୟ ମୋର ହୃଦୟକୁ ଆନ୍ଦୋଳିତ କରିଥିଲା । ଋଷିପ୍ରଣୀତ ଗ୍ରନ୍ଥମାନଙ୍କରୁ ପ୍ରକୃତ ତଥ୍ୟ ଯାହା ମୁଁ ଅବଗତ ହୋଇଥିଲି, ନାନାବିଧ ଉପାଖ୍ୟାନ ସହିତ ତାହାର ଇତିହାସ ଧାରାବାହିକ ରୂପେ ଏହି ଗ୍ରନ୍ଥରେ ସନ୍ନିବେଶ କରିଛୁ । ପୁଣି ଏଥିରେ ମୁକ୍ତିକ୍ଷେତ୍ର ଜଗନ୍ନାଥାଦି ଚତୁର୍ଦ୍ଧା ମୂର୍ତ୍ତିଙ୍କ ଆବିର୍ଭାବର କାଳ ନିର୍ଣ୍ଣୟ, ତୀର୍ଥ-ଦେବତାମାନଙ୍କ କଥା ଓ ମହାପ୍ରସାଦର ମାହାତ୍ମ୍ୟ ପ୍ରଭୃତି ବିଷୟମାନଙ୍କର ମଧ୍ୟ ସମଧିକ ଆଲୋଚନା କରିଯାଇଅଛି ।

ଭୂମଣ୍ଡଳର ସୃଷ୍ଟି ଓ ପ୍ରଳୟ ସହିତ ଶ୍ରୀକ୍ଷେତ୍ରର ସମ୍ବନ୍ଧ ନାହିଁ । ଏହା ବିଷ୍ଣୁଙ୍କ କଳେବର । ତେଣୁ ମୁକ୍ତିଧାମ ଅଟେ । ଏହି ସ୍ଥଳରୁ ଭୂମଣ୍ଡଳରେ ଦୁଷ୍ଟର ଦମନ ଓ ଶିଷ୍ଟର ପାଳନ ପାଇଁ ମହାବିଷ୍ଣୁ ଦେଶ କାଳ ପାତ୍ର ଭେଦରେ ଯେଉଁସବୁ ଅବତାର ରୂପେ ପ୍ରକାଶିତ ହୋଇଅଛନ୍ତି, ତାହା ଏହି ନୀଳାଚଳବିହାରୀଙ୍କ ଅଂଶ ମାତ୍ର । ତେଣୁ ଏ କ୍ଷେତ୍ରକୁ ଦଶାବତାର କ୍ଷେତ୍ର ମଧ୍ୟ କୁହାଯାଏ । ଏହି କ୍ଷେତ୍ରର ବିକୃତ ଇତିହାସ ଯାହା ନାନାବିଧଭାବେ ପ୍ରକାଶିତ ହୋଇଅଛି, ତାହା ଏହି ଗ୍ରନ୍ଥ ପ୍ରକାଶ ଦ୍ୱାରା ଦୂରୀଭୂତ ହୋଇ ପ୍ରକୃତ ତଥ୍ୟ ଜଗତରେ ପ୍ରକାଶ ପାଇବ ବୋଲି ମୁଁ ଆଶାକରେ । ଏ କ୍ଷେତ୍ରର ଅଧୀଶ୍ୱର ଦାରୁବ୍ରହ୍ମ ଚତୁର୍ଦ୍ଧାମୂର୍ତ୍ତି ପ୍ରଭୃତିଙ୍କ ବିଷୟରେ ସାଧାରଣରେ ଯେଉଁ ଭ୍ରମଧାରଣା ଜାତ ହୁଏ ବା ହେଉଅଛି, ତାହାର ସମାଧାନ ମଧ୍ୟ ଏହି ଗ୍ରନ୍ଥରେ ଦିଆଯାଇଅଛି । ଆଶାକରେ ଧର୍ମପରାୟଣ ଲୋକେ ନୀଳାଚଳ-ବିହାରୀଙ୍କ ପ୍ରକୃତ ତଥ୍ୟ ଜାଣି ନିର୍ବିବାଦରେ ଓ ନିଃସନ୍ଦେହରେ ପ୍ରଭୁଙ୍କଠାରେ ନିଜକୁ ସମର୍ପଣ କରି କୃତାର୍ଥ ହେବା ସଙ୍ଗେ ସଙ୍ଗେ ଭବବନ୍ଧନରୁ ମୁକ୍ତିଲାଭ କରିପାରିବେ ।

ଏହି ଗ୍ରନ୍ଥ ପ୍ରଣୟନ ସମୟରେ ପୁରୀ ସଂସ୍କୃତ କଲେଜର ଭୂତପୂର୍ବ ଅଧ୍ୟାପକଦ୍ୱୟ ସ୍ମୃତିତୀର୍ଥ ପଣ୍ଡିତ ଶ୍ରୀ ଆନନ୍ଦଚନ୍ଦ୍ର ମିଶ୍ର ଓ ସାହିତ୍ୟାଚାର୍ଯ୍ୟ ପଣ୍ଡିତ ଶ୍ରୀ ବାସୁଦେବ ମିଶ୍ରଙ୍କ ସଦୁପଦେଶ ଓ ସାହାଯ୍ୟ ପାଇ ମୁଁ ତାଙ୍କଠାରେ କୃତଜ୍ଞତାପୂର୍ଣ୍ଣ ଧନ୍ୟବାଦ ଜଣାଉଅଛି । ମୋର ଶ୍ରଦ୍ଧାସ୍ପଦ ପଣ୍ଡିତ ଶ୍ରୀ ଗଙ୍ଗାଧର ମହାପାତ୍ରଙ୍କ

ସର୍ବବିଧ ଓ ସମର୍ଥକ ସାହାଯ୍ୟ ଲାଭ କରି ପାରି ନ ଥିଲେ ଏ ଗ୍ରନ୍ଥ ପ୍ରଣୟନରେ ମୁଁ ସମର୍ଥ ହୋଇପାରି ନ ଥାନ୍ତି । ତେଣୁ ତାଙ୍କ ସାହାଯ୍ୟକୁ ବହୁମୂଲ୍ୟ ମନେକରି ତାଙ୍କୁ ଧନ୍ୟବାଦ ଜଣାଉଛି । ଶ୍ରୀ ଆନନ୍ଦକୁମାର ପାଣି ଓ ଶ୍ରୀ ବାଞ୍ଛାନିଧି ଦାସ ଏ ପୁସ୍ତକ ପ୍ରକାଶନ କାର୍ଯ୍ୟରେ ମୋତେ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କୁ ମଧ୍ୟ ଆନ୍ତରିକ ଧନ୍ୟବାଦ ଜଣାଉଛି ।

ଏହି ଗ୍ରନ୍ଥ ତିନିଭାଗରେ ବିଭକ୍ତ କରି ପ୍ରକାଶ କରାଗଲା । ନୀଳାଚଳବିହାରୀଙ୍କ ଇତିହାସ ଓ ମାହାତ୍ମ୍ୟ ଲେଖିବା ବିଷୟକୁ ମୁଁ ମୋର ଜୀବନର ଚତୁର୍ଥଭାଗ ସମୟରେ ସର୍ବୋତ୍ତମ ତପସ୍ୟା ବୋଲି ମନେ କରୁଛି ଓ ସେହି ପରମାତ୍ମା ପ୍ରଭୁଙ୍କଠାରେ ଏହି ଗ୍ରନ୍ଥ ସମର୍ପଣକୁ ମୋର ଜୀବନର ସାଫଲ୍ୟ ବୋଲି ମନେ କରୁଅଛି । ପାଠକ ଶ୍ରୋତୃବର୍ଗଙ୍କ ପ୍ରତି ସାନୁନୟ ନିବେଦନ ଯେ, ସେମାନେ ଦୟାକରି ଏହା ବିଷ୍ଣୁଙ୍କ କ୍ଷେତ୍ର ମାହାତ୍ମ୍ୟକୁ ସରଳ ଓ ଭକ୍ତିଭାବରେ ପଢ଼ିବା ଶୁଣିବା ସଙ୍ଗେ ସଙ୍ଗେ ଅନ୍ୟ ଶ୍ରୋତା ଓ ପାଠକମାନଙ୍କୁ ଏ ବିଷୟର ଅବଗତ ଦିଗରେ ପ୍ରବର୍ତ୍ତାଇବେ ଏବଂ ଏ ଗ୍ରନ୍ଥରେ ଭାଷାଗତ ବା ଆକ୍ଷରିକ ଯଦି କୌଣସି ଭ୍ରମ ଲକ୍ଷିତ ହୁଏ, ତାହା ମୁକ୍ତିକ୍ଷେତ୍ର ଇତିହାସର ମାହାତ୍ମ୍ୟ ବୋଲି ଲକ୍ଷ୍ୟ ରଖି କ୍ଷମା କରିବେ ।

ନିବେଦକ
ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ

# ସୂଚୀପତ୍ର

## —ପ୍ରଥମ ଭାଗ—

## —ଦ୍ୱିତୀୟ ଭାଗ—

## —ତୃତୀୟ ଭାଗ—

( ଓଁ ତତ୍ସତ୍ )

# ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ

## ପୁରୁଷୋତ୍ତମ କ୍ଷେତ୍ରର ପରିଚୟ

"ବିଷ୍ଣୋଃ କଳେବରେ ତସ୍ମିନ୍ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ
ଅନ୍ତର୍ବେଦୀ ମହାପୁଣ୍ୟା ବିଷ୍ଣୋ ହୃଦୟ ସନ୍ନିଭା ॥"

[ ଉତ୍କଳ ଖଣ୍ଡେ ]

ଅର୍ଥାତ୍:—ଏହି ପୁରୁଷୋତ୍ତମ କ୍ଷେତ୍ର ଶ୍ରୀବିଷ୍ଣୁଙ୍କର କଳେବର ଅଟେ । ତନ୍ମଧ୍ୟରେ ଅନ୍ତର୍ବେଦୀ ସ୍ଥାନଟି ବିଷ୍ଣୁଙ୍କର ହୃଦୟ ସ୍ୱରୂପ ।

ଏବଂଚ—

"ଏତତ୍ କ୍ଷେତ୍ରଂ ବରଂ ତସ୍ୟ ବପୁର୍ଭୂତଂ ମହାତ୍ମନଃ
ସ୍ୱୟଂ ବପୁଷ୍ମାନ୍ ଯତ୍ରାସ୍ତେ ସ୍ୱନାମ୍ନାଖ୍ୟାପିତଂ ହି ତତ୍ ॥"

ଅର୍ଥାତ୍:—ଏହି କ୍ଷେତ୍ରବରଟି ପରମାତ୍ମା ବିଷ୍ଣୁଙ୍କ ଶରୀର । ପରମାତ୍ମା ଏହି କ୍ଷେତ୍ରରେ ସ୍ୱୟଂ ଶରୀର ଧାରଣ କରି ରହି ଅଛନ୍ତି ଏବଂ ନିଜ ନାମ ଅନୁସାରେ ପୁରୁଷୋତ୍ତମ ଆଖ୍ୟା ଦେଇଅଛନ୍ତି ।

ପୁଣି କଥିତ ଅଛି ଯେ:—

"ଶ୍ୱେତଦ୍ୱୀପେ ଯଥା ବିଷ୍ଣୋର୍ଭୋଗଭୂମୌ ନିଜାଳୟଃ
ଜମ୍ବୁଦ୍ୱୀପେ କର୍ମଭୂମୌ ନିଜସ୍ଥାନ ମିଦଂ ସ୍ମୃତଂ ॥"

ଅର୍ଥାତ୍:—ପରମାତ୍ମା ବିଷ୍ଣୁଙ୍କର ଭୋଗଭୂମି ଶ୍ୱେତଦ୍ୱୀପ ଯେପରି ନିଜ ଆଳୟ, ସେହିପରି ଜମ୍ବୁଦ୍ୱୀପରେ ଏହି ପୁରୁଷୋତ୍ତମ

କ୍ଷେତ୍ର କର୍ମଭୂମିରୂପେ ନିଜ ସ୍ଥାନ ଅଟେ । ସୁତରାଂ ଏହି ପୁରୁଷୋତ୍ତମ କ୍ଷେତ୍ର ଶାଶ୍ୱତ କ୍ଷେତ୍ରରୂପେ ପ୍ରସିଦ୍ଧ ଏବଂ ଦଶାବତାର କ୍ଷେତ୍ରରୂପେ ମଧ୍ୟ ପରିଚିତ । ଯଥା:—

"ମୂଳାୟତନ ମେତଦ୍ଧି ସୃଷ୍ଟି ପାଳନ ସଂହୃତେଃ ।
ଅବତୀର୍ଯ୍ୟ ଭଗବାନ୍ ପ୍ରାଦୁର୍ଭାବୈର୍ନ୍ୟନ୍ତ କାର୍ଯ୍ୟତଃ ॥
କୃତ୍ୱାଦ୍ୟ କୃତଂ ପୃଥିବ୍ୟାଂହ୍ମ ପୁନରତ୍ରୈବ ନିଶ୍ଚିତ ।
ଅବତାରଗଣାଦୀନାଂ ଦର୍ଶନାଦ୍ୟେହ ଯତ୍ଫଳଂ ॥
ତତ୍ ଫଳଂ ଲଭତେ ମର୍ତ୍ତ୍ୟୋ ଦୃଷ୍ଟ୍ୱା ଶ୍ରୀପୁରୁଷୋତ୍ତମଂ ।
ଦଶାବତାର ସଂଜ୍ଞସ୍ୟ କଥିତା ସୁତ ! ତେମସ୍ୱା ॥"

ଅର୍ଥାତ୍:—ସୃଷ୍ଟି, ସ୍ଥିତି ଓ ପ୍ରଳୟର ଏହି ପୁରୁଷୋତ୍ତମ କ୍ଷେତ୍ର ମୂଳ ସ୍ଥଳ ଅଟେ । ଭଗବାନ୍ ଏହି ସ୍ଥଳରେ ଅବତୀର୍ଣ୍ଣ ହୋଇ ଅନ୍ୟତ୍ର ତାଙ୍କ ଅବତାରର କାର୍ଯ୍ୟ କରିବାକୁ ଯାଆନ୍ତି ଏବଂ ପୃଥିବୀରେ ତାହା ସମ୍ପାଦନ କରି ପୁନଶ୍ଚ ଏହି ସ୍ଥାନକୁ ଆସି ବିରାଜମାନ କରନ୍ତି । ଏଣୁ ଦଶାବତାରମାନଙ୍କ ଦର୍ଶନାଦିରେ ଯେଉଁ ଫଳ ମିଳେ, ଏହି କ୍ଷେତ୍ରରେ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କଲେ ସେହି ଫଳ ମଧ୍ୟ ମିଳେ । ତେଣୁ ଏହି ପୁରୁଷୋତ୍ତମ କ୍ଷେତ୍ରର ଅନ୍ୟ ନାମ ଦଶାବତାର କ୍ଷେତ୍ର । ପୁରୁଷୋତ୍ତମ କ୍ଷେତ୍ର ସମ୍ବନ୍ଧରେ ଭଗବାନ୍ ବିଷ୍ଣୁ ଧର୍ମରାଜ ଯମଙ୍କୁ କଥା ପ୍ରସଙ୍ଗରେ କହିଅଛନ୍ତି ଯେ:—

"ଅତ୍ର ତ୍ୟଜନ୍ତି ଯେ ପ୍ରାଣା ନ୍ତେଷାମ୍ ତତ୍କ୍ଷଣମେ ବହି
ସ୍ୱରୂପା ଜାୟତେ ମୁକ୍ତିଃ ସଂଶୟଃ ମାସ୍ତୁତେ ଯମ ! ॥"

[ ଉତ୍କଳ ଖଣ୍ଡେ ]

ଅର୍ଥାତ୍:—ଏହି ପୁରୁଷୋତ୍ତମ କ୍ଷେତ୍ରରେ ଯେଉଁ ପ୍ରାଣିମାନେ ପ୍ରାଣତ୍ୟାଗ କରନ୍ତି, ସେମାନଙ୍କର ତତ୍କ୍ଷଣାତ୍ ସ୍ୱରୂପା ମୁକ୍ତି ହୁଏ । ହେ ଯମ ! ଏଥିରେ ତୁମ୍ଭର ସଂଶୟ କରିବା ଉଚିତ ନୁହେ । ଇତ୍ୟାଦି ।

ସୁତରାଂ ପୁରୁଷୋତ୍ତମକ୍ଷେତ୍ର ପ୍ରାଣିବର୍ଗଙ୍କ ମୁକ୍ତିଧାମ ଅଟେ । ଏହି କ୍ଷେତ୍ର ସମ୍ବନ୍ଧରେ ବେଦବ୍ୟାସଙ୍କ ପ୍ରଣୀତ ଅଷ୍ଟାଦଶ ମହାପୁରାଣ ମଧ୍ୟରେ ସ୍କନ୍ଦ ମହାପୁରାଣର ଉତ୍କଳଖଣ୍ଡ ନାମକ ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟରେ ସବିଶେଷ ବର୍ଣ୍ଣନା ଅଛି । ଏହା ଅଠାବନ ଅଧ୍ୟାୟରେ ସମ୍ପୂର୍ଣ୍ଣ । ଅନ୍ୟାନ୍ୟ ପୁରାଣମାନଙ୍କରେ କଥାପ୍ରସଙ୍ଗରେ ପୁରୁଷୋତ୍ତମ କ୍ଷେତ୍ର ସମ୍ବନ୍ଧରେ ଯେଉଁ ଉପାଖ୍ୟାନର ବର୍ଣ୍ଣନା କରାଯାଇଛି, ତାହା କେବଳ ଏହି

ଉତ୍କଳଖଣ୍ଡର ଲିଖିତ ବର୍ଣ୍ଣନାର ସମର୍ଥକ ସଂକ୍ଷିପ୍ତ ଉପାଖ୍ୟାନ ମାତ୍ର । କାଶୀଖଣ୍ଡ ଓ ଉତ୍କଳଖଣ୍ଡ ପ୍ରଭୃତି ଛଅଗୋଟି ଖଣ୍ଡ ବା ଭାଗରେ ସ୍କନ୍ଦପୁରାଣ ବିଭକ୍ତ । ପରମାତ୍ମା ପ୍ରଭୁ ଜୀବମାନଙ୍କୁ ସୃଷ୍ଟି କରି ସଂସାର ଲୀଳାକ୍ଷେତ୍ରରେ ଯେପରି କ୍ରୀଡ଼ନକ କରିଅଛନ୍ତି, ସେହିପରି ସେମାନଙ୍କ ମୁକ୍ତି ସାଧନ ପାଇଁ ମୁକ୍ତିପଥ ମଧ୍ୟ ଆବିଷ୍କାର କରିଅଛନ୍ତି । ଅନ୍ୟାନ୍ୟ ତୀର୍ଥମାନଙ୍କରେ ପ୍ରଭୁଙ୍କ ଅଂଶ ବା କଳାର ଆବିର୍ଭାବ ହୁଏ । ସେ ସବୁ ଅବତାରରେ ଦୁଷ୍ଟମାନଙ୍କୁ ବିନାଶ ପୂର୍ବକ ଜଗତରେ ଶାନ୍ତି ସ୍ଥାପନ କରି ମୁକ୍ତିପଥରେ ପଥିକ ହେବା ସକାଶେ ମାନବମାନଙ୍କୁ ଜ୍ଞାନର ଉପଦେଶ ଦେଇ ଅନ୍ତର୍ହିତ ହୁଅନ୍ତି । ମାତ୍ର ଏହି ପୁରୁଷୋତ୍ତମ କ୍ଷେତ୍ରରେ ସନାତନ ପ୍ରଭୁ ଆବହମାନ କାଳରୁ ନିତ୍ୟ ବିରାଜିତ ଥିବାରୁ ଏହି କ୍ଷେତ୍ର ବିଷ୍ଣୁଙ୍କ ନିଜାଳୟ କ୍ଷେତ୍ରରୂପେ ପ୍ରସିଦ୍ଧ ଓ ପ୍ରଶଂସିତ ହୋଇଅଛି ।

ତେଣୁ ପ୍ରତ୍ୟେକ ମୁକ୍ତିକାମୀଙ୍କର କ୍ଷେତ୍ରର ପ୍ରକୃତ ତତ୍ତ୍ୱ ଜାଣିବା ଆବଶ୍ୟକ ଅଟେ । ଏ ସମ୍ବନ୍ଧରେ ଉତ୍କଳଖଣ୍ଡ ନାମକ ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ଗ୍ରନ୍ଥରେ ବର୍ଣ୍ଣିତ ବିଷୟକୁ ଅବଲମ୍ବନ କରି ଏହି ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ ନାମକ ଗ୍ରନ୍ଥ ପ୍ରକାଶ କରାଯାଉଅଛି ।

## ବ୍ରହ୍ମାଙ୍କ ପ୍ରତି ବିଷ୍ଣୁଙ୍କର ଉପଦେଶ

ସ୍କନ୍ଦ ପୁରାଣରେ ଉଲ୍ଲେଖ ଅଛି ଯେ, ଶିବଙ୍କ ମୁଖରୁ ତାଙ୍କ ପୁତ୍ର 'ସ୍କନ୍ଦ' ସର୍ବପ୍ରଥମେ ଏ କ୍ଷେତ୍ରର ବିବରଣ ଅବଗତ ହୋଇଥିଲେ ଏବଂ ସ୍କନ୍ଦ (ଅର୍ଥାତ୍ କାର୍ତ୍ତିକେୟ) ମନ୍ଦର ପର୍ବତରେ ସିଦ୍ଧ, ଋଷି ଓ ଦେବଗଣଙ୍କ ସଭାରେ ପ୍ରକାଶ କରିବା ସମୟରେ ମହର୍ଷି ଜୈମିନି ସେଠାରେ ସ୍କନ୍ଦଙ୍କଠାରୁ ଯାହା ଶୁଣିଥିଲେ ଓ ପରେ ଋଷିଗଣଙ୍କୁ ସମ୍ବୋଧନ କରି ଯାହା କହିଅଛନ୍ତି, ସେହି ଉପାଖ୍ୟାନ ଉତ୍କଳଖଣ୍ଡ ନାମରେ ଖ୍ୟାତ । ସେଥିରୁ ପ୍ରକାଶ ଯେ, ବ୍ରହ୍ମା ଚରାଚର ଜଗତକୁ ସୃଷ୍ଟି କଲାପରେ ସେହି ସୃଷ୍ଟି ଭାରରେ ନିଜକୁ ଭାରକ୍ରାନ୍ତ ମନେକରି ଚିନ୍ତାକଲେ କି, କି ଉପାୟ ଅବଲମ୍ବନ କଲେ ସୃଷ୍ଟି କରିବାର ଗୁରୁଭାର ମୋତେ ଆଉ ବହନ କରିବାକୁ ହେବନାହିଁ ଏବଂ ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ତାପତ୍ରୟରେ ସନ୍ତପ୍ତ ଜୀବଗଣଙ୍କର କିପରି ମୁକ୍ତି ହେବ । ଏପରି ଚିନ୍ତା କରୁ କରୁ ବ୍ରହ୍ମାଙ୍କ ମନରେ ଉଦୟ ହେଲା ଯେ, ପରାତ୍ପର ପରମେଶ୍ୱର ବିଷ୍ଣୁଙ୍କୁହିଁ ଏଥିର ଉପାୟ ପାଇଁ ସ୍ତବ କରିବା ବିଧେୟ । ତେଣୁ ବିଷ୍ଣୁଙ୍କୁ ସ୍ତବ କଲେ । ବ୍ରହ୍ମାଙ୍କ ସ୍ତବରେ ସନ୍ତୁଷ୍ଟ ହୋଇ ତାଙ୍କୁ ଉପଦେଶ ଦେବାପାଇଁ ସ୍ୱୟଂ ଭଗବାନ ବିଷ୍ଣୁ ନୀଳମେଘ ସଦୃଶ ଶ୍ୟାମଳବର୍ଣ୍ଣ ଓ ଶଙ୍ଖଚକ୍ରାଦି ଚିହ୍ନିତ ତ୍ରିବିଗ୍ରହ ହୋଇ ଗରୁଡ଼ ଆରୋହଣ ପୂର୍ବକ ଆବିର୍ଭୂତ ହେଲେ ଓ ବ୍ରହ୍ମାଙ୍କୁ ଉପଦେଶ ଦେଲେ ଯେ, ମଦୀୟ ମାୟା ଅନାଦି ଓ ସ୍ୱଭାବସିଦ୍ଧ; ତେଣୁ ସୁଦୃଢ଼ ଅଟେ । କର୍ମରୂପ ବନ୍ଧନଦ୍ୱାରା ଏପରି ସୁଦୃଢ଼ ଯେ, ପ୍ରାଣୀବର୍ଗଙ୍କର ଏହା ଦୁର୍ଭେଦ୍ୟ ସୁତରାଂ ସେହି ମାୟାର ପ୍ରଭାବ ଥିବାଯାଏ ଜୀବର ମୃତ୍ୟୁ ଓ ଜନ୍ମ ଅପରିହାର୍ଯ୍ୟ । ଯଦି ଏ ବିଷୟରେ ଜାଣିବା ପାଇଁ ତୁମର ନିତାନ୍ତ ଅଧ୍ୟବସାୟ ଥାଏ, ତାହାହେଲେ ତାହାର ଉପାୟ କହୁଅଛି କହି ଅନେକ ଉପଦେଶ ଦେଇଥିଲେ ଏବଂ ଶେଷରେ ବ୍ୟକ୍ତ କଲେ "ହେ ବ୍ରହ୍ମନ୍! ଦକ୍ଷିଣ ମହୋଦଧିର ତଟସ୍ଥାନରେ ଯେଉଁ ନୀଳପର୍ବତ ଅଛି, ତାହା ପୃଥିବୀ ମଧ୍ୟରେ ଆମର ଗୋପନୀୟ ସ୍ଥାନ। ମୁଁ ସର୍ବସଙ୍ଗ ତ୍ୟାଗକରି ସେହି ସ୍ଥାନରେ ଶରୀର ଧାରଣକରି ନିତ୍ୟ ଅବସ୍ଥାନ କରୁଅଛି । ତେଣୁ ଏହା ମୋର ନାମାନୁସାରେ "ପୁରୁଷୋତ୍ତମ କ୍ଷେତ୍ର" ବୋଲି ପ୍ରସିଦ୍ଧ । ଏହି କ୍ଷେତ୍ର ସୃଷ୍ଟି ଓ ପ୍ରଳୟଦ୍ୱାରା ଆକ୍ରାନ୍ତ ହୁଏ ନାହିଁ ।

ବର୍ତ୍ତମାନ ମୋର ଯେଉଁ ଚତୁର୍ବାହୁ ଚନ୍ଦ୍ରିତ କଳେବର ଦର୍ଶନ କରୁଅଛ, ସେହି କ୍ଷେତ୍ରକୁ ଗଲେ ସେହିପରି ଦର୍ଶନ କରି ପାରିବ । ସେହି ନୀଳପର୍ବତର ମଧ୍ୟସ୍ଥଳରେ ଥିବା ଅକ୍ଷୟବଟ ମୂଳର ବାୟୁ କୋଣରେ ଅବସ୍ଥିତ ରୋହିଣୀ କୁଣ୍ଡ ତଟରେ ଜୀବମାନେ ନିଜ ନିଜ ଚର୍ମଚକ୍ଷୁ ଦ୍ୱାରା ମୋତେ ଦର୍ଶନ କରି ଏବଂ ସେହି କୁଣ୍ଡ ଜଳରେ ସ୍ନାନକରି ସକଳ ପାପରୁ ମୁକ୍ତହୋଇ ପବିତ୍ର ହୁଅନ୍ତି ।

ଅତଏବ ତୁମ୍ଭେ ସେହି କ୍ଷେତ୍ରକୁ ଗମନ କର । ସେଠାରେ ମୋତେ ଦର୍ଶନ ଓ ଧ୍ୟାନ କଲେ ଉକ୍ତ କ୍ଷେତ୍ରର ପରମ ମହିମା ସ୍ପଷ୍ଟରୂପେ ଜାଣିପାରିବ । ସେହି ସ୍ଥଳଟି ମୋର ମାୟାଦ୍ୱାରା ଗୁପ୍ତ ହୋଇଥିବାରୁ ଶ୍ରୁତି ସ୍ମୃତି ଓ ଇତିହାସ ମାନଙ୍କରେ ମଧ୍ୟ ଅଗୋଚର ରହିଅଛି, ମାତ୍ର ମୁଁ ତୁମ୍ଭପ୍ରତି ପ୍ରସନ୍ନ ହୋଇଥିବାରୁ ତୁମ୍ଭ ଯୋଗୁଁ ସକଳ ବ୍ୟକ୍ତିଙ୍କଠାରେ ଏହି କ୍ଷେତ୍ର ଆଶ୍ଚର୍ଯ୍ୟଭାବରେ ପ୍ରକାଶ ପାଇବ । ତତ୍ପରେ ବିଷ୍ଣୁ ଅନ୍ତର୍ଦ୍ଧାନ ହେଲେ ।”

---

## ବ୍ରହ୍ମାଙ୍କର ପୁରୁଷୋତ୍ତମ କ୍ଷେତ୍ର ଗମନ

ତହିଁଉତ୍ତାରୁ ବ୍ରହ୍ମା ପୁରୁଷୋତ୍ତମ କ୍ଷେତ୍ରକୁ ଗମନ କରି ପୂର୍ବେ ବିଷ୍ଣୁଙ୍କୁ ଯେଉଁ ରୂପରେ ଦର୍ଶନ କରିଥିଲେ, ତଦନୁରୂପ ନୀଳମାଧବ ମୂର୍ତ୍ତିଙ୍କୁ ସେଠାରେ ଦର୍ଶନ କଲେ ଓ ହୃଷ୍ଟଚିତ୍ତରେ ସ୍ତବ କଲେ । ଏପରି ସମୟରେ ଗୋଟିଏ କାକ ପିପାସାର୍ତ୍ତ ହୋଇ ସେଠାରେ ଉପସ୍ଥିତ ହେଲା ଏବଂ ଜଳରେ ପରିପୂର୍ଣ୍ଣ ଥିବା ରୋହିଣୀକୁଣ୍ଡରେ ବୁଡ଼ି ବୁଡ଼ି ସ୍ନାନ କରି ନୀଳଚକ୍ର ପରି ସୁ ମନୋହର ନୀଳମାଧବଙ୍କୁ ଦର୍ଶନ କଲା ଏବଂ ପୁନଃ ପୁନଃ ଭୂମିରେ ଲୁଣ୍ଠିତ ହେଲା । ସେଥିରୁ ସେ ନିଜ କାକ-ଶରୀର ତ୍ୟାଗ କରି ଶଙ୍ଖ, ଚକ୍ର, ଗଦା, ପାଣି ସମନ୍ୱିତ ବିଗ୍ରହ ଧାରଣ କରି ନୀଳମାଧବଙ୍କ ପାର୍ଶ୍ୱରେ ଉପସ୍ଥିତ ହେଲା । କାକପକ୍ଷୀର ଯୋଗୀନ୍ଦ୍ରଗଣଙ୍କ ଦୁର୍ଲ୍ଲଭ ଏପରି ଅବସ୍ଥାନ୍ତର ଦେଖି ବ୍ରହ୍ମା ମନେ ମନେ ଚିନ୍ତା କଲେ କି, କାକର ମୁକ୍ତିପରେ ପ୍ରାଣିବର୍ଗ କ୍ରମଶଃ ମୁକ୍ତିଲାଭ କରିବେ । ତେଣୁ ଏହି ସୃଷ୍ଟି କ୍ରମେ କ୍ରମେ କ୍ଷୀଣ ହେବ ।

ମନୁଷ୍ୟମାନଙ୍କର ମୁକ୍ତି ବିଷୟରେ ବେଦାନ୍ତରେ ମଧ୍ୟ ସଂଶୟ ଅଛି । ମାତ୍ର ଏଠାରେ ବିଷ୍ଣୁଭକ୍ତଙ୍କ ମୁକ୍ତି ଦୁର୍ଲ୍ଲଭ ନୁହେଁ । ଏଥିପୂର୍ବେ ଭଗବାନ ବିଷ୍ଣୁ ବ୍ରହ୍ମାଙ୍କୁ ଯାହା କହି ଅନ୍ତର୍ହିତ ହୋଇଥିଲେ, ତାହା ବ୍ରହ୍ମାଙ୍କର ପ୍ରତ୍ୟକ୍ଷୀଭୂତ ହେଲା । ଯେଉଁ ହରିଙ୍କ ନାମ-କୀର୍ତ୍ତନରେ ସକଳ ପାପ ଧ୍ୱଂସ ହୋଇଯାଏ ଏବଂ ଯାହାଙ୍କ ନାମ ସ୍ମରଣ କରି ପ୍ରାଣ ତ୍ୟାଗକଲେ ମୁକ୍ତିଲାଭ ହୁଏ, ସେହି ପ୍ରଭୁଙ୍କ ସାକ୍ଷାତ୍ ଦର୍ଶନରେ ମୁକ୍ତି ଲାଭ ହେବା କଥା ଆଶ୍ଚର୍ଯ୍ୟ ନୁହେ । ବ୍ରହ୍ମା ଏହା ହୃଦୟଙ୍ଗମ କଲେ ଏବଂ ନୀଳମାଧବ ମୂର୍ତ୍ତିଙ୍କୁ ସ୍ମରଣ କରି ଧ୍ୟାନମଗ୍ନ ହେଲେ ।

---

## ପୁରୁଷୋତ୍ତମ କ୍ଷେତ୍ରରେ ଯମରାଜାଙ୍କ ପ୍ରବେଶ ଓ ଲକ୍ଷ୍ମୀଙ୍କ ଉପଦେଶ

ବ୍ରହ୍ମା ଧ୍ୟାନମଗ୍ନ ହେବା ସମୟରେ ହଠାତ୍ ଅପ୍ରତ୍ୟାଶିତ-ଭାବରେ ଯମରାଜା ନିଜର କ୍ଷମତା ଧ୍ୱଂସର ଆଶଙ୍କାରେ ବ୍ୟାକୁଳ ଓ ମ୍ଳାନ ହୋଇ ଦୀର୍ଘ ନିଃଶ୍ୱାସ ତ୍ୟାଗକରି ନୀଳମାଧବଙ୍କ ସମୀପରେ ନିଜର ଅଧିକାରର ସୁଦୃଢ଼ତା ପାଇଁ ସ୍ତବ କଲେ । ବ୍ରହ୍ମା ସ୍ୱଚକ୍ଷୁରେ ଏହା ଦର୍ଶନ କରି ଯମରାଜାଙ୍କ ଉଦ୍ଦେଶ୍ୟ ବୁଝିପାରିଥିଲେ । ଇତ୍ୟବସରରେ ଯମରାଜାଙ୍କ ସ୍ତବରେ ଭଗବାନ୍ ବିଷ୍ଣୁ ସନ୍ତୁଷ୍ଟ ହୋଇ ପାର୍ଶ୍ୱସ୍ଥିତ ଲକ୍ଷ୍ମୀଙ୍କ ପ୍ରତି କଟାକ୍ଷପାତ କରି ଯମରାଜାଙ୍କୁ ଉପଦେଶ ଦେବାପାଇଁ ଆଜ୍ଞାକଲେ । ସେହି ଆଜ୍ଞାନୁସାରେ ଲକ୍ଷ୍ମୀଦେବୀ ଯମରାଜାଙ୍କୁ ଯାହା କହିଅଛନ୍ତି, ତାହାର ସାରାଂଶ ଏହି ଯେ, ତୁମ୍ଭେ ଯେଉଁ ଅଭିପ୍ରାୟରେ ଆମ୍ଭ ଦୁହିଁଙ୍କୁ ସ୍ତବ କରୁଅଛ, ତାହା ଏ କ୍ଷେତ୍ରରେ ସଫଳ ହେବ ନାହିଁ । ଯେହେତୁ ଏହି ପୁରୁଷୋତ୍ତମ କ୍ଷେତ୍ର ଆମ୍ଭ ଦୁହିଙ୍କ (ମହାଲକ୍ଷ୍ମୀ ଓ ବିଷ୍ଣୁଙ୍କ) ଅଧିରାଜ୍ୟ । କଳ୍ପାବସାନରେ ମଧ୍ୟ ଏ କ୍ଷେତ୍ରକୁ ଆମ୍ଭେ ଦୁହେଁ ତ୍ୟାଗ କରିବୁ ନାହିଁ । ବ୍ରହ୍ମା ପ୍ରଭୃତିଙ୍କର ମଧ୍ୟ ଏ ସ୍ଥାନରେ ଅଧିକାର ନାହିଁ । ଏ କ୍ଷେତ୍ରରେ ମନୁଷ୍ୟ ଓ ତିର୍ଯ୍ୟକ୍ ଜାତି ପଶୁପକ୍ଷୀ ମାନଙ୍କର ପ୍ରବେଶ ମାତ୍ରେ ସେମାନଙ୍କ ପାପରାଶି ଅଗ୍ନିରେ ତୁଳାପରି ଧ୍ୱଂସ ହୋଇଯାଏ । ଯେଉଁ ଜୀବମାନେ ପାପପୁଣ୍ୟ ଶୃଙ୍ଖଳରେ ଦୃଢ଼ଭାବେ ଆବଦ୍ଧ ଅଛନ୍ତି, ସେମାନଙ୍କର ସଂଯମ ଅର୍ଥାତ୍ ଦମନର କର୍ତ୍ତା ତୁମ୍ଭେ

ତୁମ୍ଭେ ବର୍ଣ୍ଣିତ ହୋଇଅଛ । ଏହି କ୍ଷେତ୍ରରେ ନୀଳକାନ୍ତମଣି ପରି ମନୋଜ୍ଞ ପ୍ରାସାଦ ନାରାୟଣଙ୍କୁ ଯେଉଁ ଶରୀରଧାରୀଙ୍କର ଦର୍ଶନ କରେ, ସେ ନିଜ କର୍ମବନ୍ଧନରୁ ମୁକ୍ତ ହୋଇଥାଏ । ଯେଉଁ ଜୀବମାନେ ଏଠାରେ ବାସ କରୁଅଛନ୍ତି, ସେମାନେ ତୁମ୍ଭ ଅଧିକାରକୁ ଆସିବେ ନାହିଁ ।

ଯମ ଏହା ଶ୍ରବଣ କରି ଲକ୍ଷ୍ମୀଙ୍କୁ ସ୍ତବ କଲେ ଓ ଏ କ୍ଷେତ୍ରର ସୀମା ଓ ତୀର୍ଥସ୍ଥାନାଦି ସମ୍ବନ୍ଧରେ ନାନା ପ୍ରଶ୍ନ କଲେ । ଲକ୍ଷ୍ମୀ ଏ କ୍ଷେତ୍ରର ସୀମା ସମ୍ବନ୍ଧରେ ଯାହା ବର୍ଣ୍ଣନ କରିଥିଲେ, ତାହା ପରବର୍ତ୍ତୀ ସୀମା ନିରୂପଣ ଅଧ୍ୟାୟରେ ପ୍ରକାଶ କରାଯାଇଅଛି । ଅନ୍ୟାନ୍ୟ ବିଷୟର ସାରାଂଶ ଏହି ଯେ, ଚରାଚର ଜଗତ ପ୍ରଳୟ କାଳରେ ଲୀନ ହେଲେ ସୁଦ୍ଧା ଏହି କ୍ଷେତ୍ରରେ ବିଷ୍ଣୁ ଓ ମହାଲକ୍ଷ୍ମୀ ଉପସ୍ଥିତ ଥିବେ । ଯେଉଁ ସପ୍ତକଳ୍ପଜୀବୀ ମାର୍କଣ୍ଡେୟ ମୁନି ଏହି ବଟମୂଳରେ ପ୍ରଭୁଙ୍କୁ ସ୍ତବକରି ଅମର ବର ପାଇଥିଲେ ଓ ବଟଛାୟା ତଳରେ ଖାତ କରି ବଟତଳରେ ଆଶ୍ରୟ ନେଇଥିଲେ, ତାହା ବିସ୍ତାରିତ ଭାବରେ ଲକ୍ଷ୍ମୀଦେବୀ ପ୍ରକାଶ କରିଥିଲେ । ଏହା ମାର୍କଣ୍ଡେୟଙ୍କ 'ଆବଟ' ଅର୍ଥାତ୍ ଖାତ ବୋଲି ପ୍ରସିଦ୍ଧ । ମାର୍କଣ୍ଡେୟ ମୁନିଙ୍କୁ ଭଗବାନ୍ ଅମର ବର ଦେଇ ଏହା ପ୍ରକାଶ କରିଥିଲେ ଯେ:—

"କ୍ଷେତ୍ରେ ଶାଶ୍ୱତମ୍ ମୁନେ ଶାଶ୍ୱତମେ ବାସ୍ତବମ୍
ନ ସୃଷ୍ଟି ପ୍ରଳୟାବତ ବର୍ତ୍ତେତେ ନାସ୍ତି ସଂଶୟଃ ।,, [ ଉତ୍କଳ ଖଣ୍ଡେ ]

ଅର୍ଥାତ:—ହେ ମୁନେ ! ମୋର ଏହି କ୍ଷେତ୍ର ଶାଶ୍ୱତ, ଅର୍ଥାତ୍ ନିତ୍ୟ । ଏଠାରେ ସୃଷ୍ଟି ଓ ପ୍ରଳୟ ନାହିଁ ।

ଇତ୍ୟାଦି କହି ପରେ ସ୍ୱୟଂ ଲକ୍ଷ୍ମୀ ବ୍ରହ୍ମାଙ୍କୁ ସମ୍ବୋଧନ କରି କହିଲେ, "ହେ ବ୍ରହ୍ମନ୍ ! ତୁମ୍ଭେ ଭଗବାନଙ୍କ ନାଭିକମଳରୁ ଉତ୍ପନ୍ନ ହୋଇଅଛ । ତଥାପି ଏହି ଜଗନ୍ନାଥ ନିଜ ଭକ୍ତମାନଙ୍କଠାରେ ଆତ୍ମସମର୍ପଣ କରନ୍ତି ଏବଂ ଶରଣାଗତ ଲୋକମାନଙ୍କର କ୍ଳେଶ ଦୂର କରି ଥାଆନ୍ତି । ତେଣୁ ସମସ୍ତଙ୍କ ଭକ୍ତିରେ ଜଗନ୍ନାଥ ତୁଷ୍ଟହୋଇ ତୁମ୍ଭପ୍ରତି ଏହି କଥା ବ୍ୟକ୍ତ କରିବାକୁ କହନ୍ତି ଯେ, ଏହି ପବିତ୍ର କ୍ଷେତ୍ର ସୁବର୍ଣ୍ଣ ବାଲୁକା ଦ୍ୱାରା ଆବୃତ ହେବ । ତଥାପି ଏହି ସ୍ଥଳରେ ଭଗବାନ ପ୍ରଭୁ ମୋ ସଙ୍ଗ ଅନନ୍ତଦେବ ଓ ସୁଦର୍ଶନଙ୍କ ସହିତ ଅବସ୍ଥାନ କରି ରହିବେ । ପୁଣି ମନେ ରଖ ଯେ, ବିଷ୍ଣୁପରାୟଣ ସକଳ ଯଜ୍ଞାନୁଷ୍ଠାନକାରୀ ଏବଂ ଶାସ୍ତ୍ରଜ୍ଞ ପଣ୍ଡିତ ଇନ୍ଦ୍ରଦ୍ୟୁମ୍ନ ନାମକ

ଏକ ରାଜା ଭବିଷ୍ୟତ୍ ସତ୍ୟଯୁଗରେ ଜନ୍ମଗ୍ରହଣ କରିବେ । ସେ ଏଠାକୁ ଆସି ଏହି କ୍ଷେତ୍ରରେ ଭଗବାନ୍ ବିଷ୍ଣୁଙ୍କୁ ଭକ୍ତିସହକାରେ ଆରାଧନା କରିବେ ଏବଂ ଭଗବାନଙ୍କ ପ୍ରୀତି ନିମନ୍ତେ ଏକସହସ୍ର ଅଶ୍ୱମେଧ ଯଜ୍ଞ କରିବେ । ଭଗବାନ ତାହାଙ୍କ ଅନୁଗ୍ରହ ନିମିତ୍ତ ଗୋଟିଏ ଦାରୁରେ ଚତୁର୍ଦ୍ଧାମୂର୍ତ୍ତି ଗଠିତ ହୋଇ ଆବିର୍ଭୂତ ହେବେ ଏବଂ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ନିବେଦନାନୁସାରେ ବ୍ରହ୍ମେ ତାଙ୍କ ପ୍ରତି ପ୍ରସନ୍ନ ହୋଇ ସେହି ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠା କରିବ ।"

ଲକ୍ଷ୍ମୀଦେବୀଙ୍କର ଏହି ବାକ୍ୟ ବ୍ରହ୍ମା ଓ ଯମ ଶ୍ରବଣ କରି ପରମ ଆନନ୍ଦିତ ହେଲେ ଏବଂ ଏହି କ୍ଷେତ୍ରର ଅନନ୍ତ ମହିମା କଥା ମନେ ମନେ ସ୍ମରଣ କରି ସ୍ୱ ସ୍ୱ ଧାମକୁ ଗମନ କଲେ ।

---

## ଇନ୍ଦ୍ରଦ୍ୟୁମ୍ନ ଓ ତୀର୍ଥପର୍ଯ୍ୟଟକଙ୍କ କଥା

ଜୈମିନି ଋଷି ଶ୍ରୋତା ବ୍ରାହ୍ମଣମାନଙ୍କୁ ସମ୍ବୋଧନ କରି କହିଲେ କି—

ଆସୀତ କୃତଯୁଗେ ବିପ୍ରା ଇନ୍ଦ୍ରଦ୍ୟୁମ୍ନୋ ମହାନୃପଃ ।
ସୂର୍ଯ୍ୟବଂଶେ ସ ଧର୍ମାତ୍ମା ସ୍ରଷ୍ଟୁଃ ପଞ୍ଚମ ପୁରୁଷଃ ।।
ସତ୍ୟବାଦୀ ସଦାଚାରୋ ବଦାତଃ ସାତ୍ତ୍ୱିକାଗ୍ରଣୀଃ ।
ନ୍ୟାୟ୍ୟାତ୍ ସଦାପାଲୟତି ପ୍ରଜାଃ ସ୍ୱାଇବୌରସପ୍ରଜାଃ ।।
ଯଷ୍ଟା ସମସ୍ତ ଯଜ୍ଞାନାମ୍ ବହ୍ମଣ୍ୟଃ ସତ୍ୟସଂଗରଃ ।
ଇଷ୍ଟାଜ ପରମଃ ଶ୍ରୀମାନ୍ ମୁମୁକ୍ଷୁ ଧର୍ମତତ୍ପରଃ ।।
ଅବନ୍ତୀଂ ନାମ ନଗରୀଂ ମାଳବେ ଭୁବିବିଶ୍ରୁତାମ୍ । ଇତ୍ୟାଦି

ଅର୍ଥାତ୍—ପୂର୍ବକାଳେ ସତ୍ୟଯୁଗରେ ଇନ୍ଦ୍ରଦ୍ୟୁମ୍ନ ନାମକ ଏକ ମହାରାଜା ଥିଲେ । ସେ ସୂର୍ଯ୍ୟବଂଶୀୟ ଓ ବ୍ରହ୍ମାଙ୍କର ଅଧଃସ୍ତନ ପଞ୍ଚମ ପୁରୁଷ ସନ୍ତାନ ଅଟନ୍ତି । ସେ ସକଳ ଯଜ୍ଞର ଅନୁଷ୍ଠାନକର୍ତ୍ତା, ବିଶେଷତଃ ସେ ସହସ୍ର ଅଶ୍ୱମେଧ ଯଜ୍ଞ କରିଥିଲେ । ଅବନ୍ତୀ ନଗରୀରେ ତାଙ୍କର ରାଜଧାନୀ ଥିଲା ।

ଏକଦା ସେ ବିଷ୍ଣୁଙ୍କ ଅର୍ଚ୍ଚନା କରୁଥିବା ସମୟରେ ବିଦ୍ୱାନ୍, କବି, ତୀର୍ଥଯାତ୍ରୀ, ଦୈବଜ୍ଞ ଓ ଶ୍ରୋତ୍ରୀୟମାନଙ୍କ ସହ

ପୁରୋହିତଙ୍କୁ ସମାଦରରେ ପଚାରିଲେ ଯେ, ପୃଥିବୀ ମଧ୍ୟରେ କେଉଁ ସ୍ଥଳରେ ଏପରି ଉତ୍ତମ ଧାମ ଅଛି, ଯେଉଁଠାରେ ଏହି ଚର୍ମଚକ୍ଷୁ ଦ୍ୱାରା ସାକ୍ଷାତ୍ ଜଗନ୍ନାଥଙ୍କ ଦର୍ଶନ ମିଳିବ ?

ପୁରୋହିତ ଏହା ଶୁଣି ସେହି ସ୍ଥଳରେ ଉପସ୍ଥିତ ତୀର୍ଥଯାତ୍ରୀଗଣଙ୍କ ପ୍ରତି ଦୃଷ୍ଟିଦେଇ କହିଲେ, ହେ, ତୀର୍ଥଯାତ୍ରୀମାନେ ! ଆପଣମାନେ ସର୍ବଦା ତୀର୍ଥପର୍ଯ୍ୟଟନରେ ବ୍ୟସ୍ତ, ଧାର୍ମିକ ଏବଂ ବହୁ ଦେଶଦର୍ଶୀ ଅଟନ୍ତି । ନରଦେବ ଇନ୍ଦ୍ରଦ୍ୟୁମ୍ନ ଯାହା ପଚାରୁଅଛନ୍ତି, ତାହା ମଧ୍ୟ ଆପଣମାନେ ଶୁଣିଅଛନ୍ତି ।

ତାହା ଶୁଣି ସଭାସ୍ଥଳରେ ଉପସ୍ଥିତ ଥିବା ଜଣେ ଜଟାଧାରୀ ବହୁ ତୀର୍ଥଗାମୀ ବକ୍ତା ଅତି ଆନନ୍ଦ ଓ କୃତାଞ୍ଜଳିପୂଟରେ କହିଲେ, ହେ, ମହାରାଜ ! ମୁଁ ବାଲ୍ୟକାଳରୁ ଏହି ଭୂମଣ୍ଡଳରେ ଅନେକ ତୀର୍ଥ ପରିଭ୍ରମଣ କରିଅଛି । ଆଜି ମଧ୍ୟ ଅନ୍ୟାନ୍ୟ ତୀର୍ଥଗାମୀ ଲୋକଙ୍କଠାରୁ ଶୁଣିଅଛି ଯେ ଉତ୍କଳ ଦେଶ ନାମରେ ଏକ ପବିତ୍ର ଦେଶ ଅଛି । ସେଠାରେ ଅନେକ ତୀର୍ଥସ୍ଥାନ ଅଛି । ଦକ୍ଷିଣ ସମୁଦ୍ର ତଟରେ ପୁରୁଷୋତ୍ତମ ନାମକ କ୍ଷେତ୍ରରେ ନୀଳଗିରି ବୋଲି ଏକ ପର୍ବତ ଅଛି । ତାହାର ଚତୁର୍ଦ୍ଦିଗ ବନ ଦ୍ୱାରା ଆବୃତ ଏବଂ ତନ୍ମଧ୍ୟରେ ଏକକ୍ରୋଶ-ବ୍ୟାପୀ କଳ୍ପବୃକ୍ଷଟିଏ ଅଛି । ଉକ୍ତ ବୃକ୍ଷର ଛାୟା ସ୍ପର୍ଶରେ ବ୍ରହ୍ମହତ୍ୟାଦି ସକଳ ପାପ ବିନଷ୍ଟ ହୁଏ । ତାହାର ପଶ୍ଚିମ ଭାଗରେ ରୋହିଣୀ ନାମକ ଏକ ବିଖ୍ୟାତ କୁଣ୍ଡ ଅଛି, ତାହା ପବିତ୍ର ଜଳରେ ପୂର୍ଣ୍ଣ ଏବଂ ସେ ଜଳର ସ୍ପର୍ଶମାତ୍ରକେ ମୁକ୍ତିଲାଭ ହୁଏ । ଏହି କୁଣ୍ଡର ପୂର୍ବତଟରେ ନୀଳକାନ୍ତମଣି ନିର୍ମିତ ଭଗବାନ ବିଷ୍ଣୁଙ୍କ ମୂର୍ତ୍ତି ବିରାଜିତ । ସେ ସାକ୍ଷାତ୍ ମୁକ୍ତିଦାୟକ ଅଟନ୍ତି । ଯେଉଁ ବ୍ୟକ୍ତି ଏହି କୁଣ୍ଡରେ ସ୍ନାନକରି ପୁରୁଷୋତ୍ତମଙ୍କୁ ଦର୍ଶନ କରେ, ସେ ସହସ୍ର ଅଶ୍ୱମେଧଯଜ୍ଞର ଫଳଭାଗୀ ହୋଇ ମୁକ୍ତିଲାଭ କରେ । ତାହାର ପଶ୍ଚିମ ଦିଗରେ ଶବର ଦୀପକ ନାମକ ଗୋଟିଏ ଶ୍ରେଷ୍ଠ ଆଶ୍ରମ ଅଛି । ଏହା ଶବର ଜାତିଙ୍କ ଗୃହରେ ପରିପୂର୍ଣ୍ଣ । ସେହି ସ୍ଥାନରୁ ବିଷ୍ଣୁଙ୍କ ଆଳୟକୁ ଯିବାକୁ ହୁଏ । ସେହି ସକାଶେ ଗୋଟିଏ ମାତ୍ର ଏକପଦୀ ମାର୍ଗ ଅଛି । ସେ ସ୍ଥଳରେ ଶଙ୍ଖ ଚକ୍ର ଗଦା ପଦ୍ମ ଧାରଣ କରି ସାକ୍ଷାତ୍ ଜଗନ୍ନାଥ ବିରାଜିତ ଅଛନ୍ତି । ସେହି କୃପାନିଧି ଭଗବାନ୍ ପ୍ରାଣୀମାନଙ୍କୁ ଦର୍ଶନ ଦେଇ ମୁକ୍ତି ପ୍ରଦାନ କରନ୍ତି । ହେ ମହାରାଜ ! ସେହି ଦେବଦେବଙ୍କ ପ୍ରୀତି ନିମିତ୍ତ

ମୁଁ ବନବାସୀ ତପସ୍ୱୀ ହୋଇ ସେହି ପୁରୁଷୋତ୍ତମ କ୍ଷେତ୍ରରେ ଏକ ବର୍ଷକାଳ ବାସ କରିଥିଲି । ସେଠାକୁ ଭଗବାନଙ୍କ ଦର୍ଶନ ପାଇଁ ରାତିରେ ଦେବତାମାନେ ଆସନ୍ତି । ଆମ୍ଭେମାନେ ମଧ୍ୟ ଏକ ଅଲୌକିକ ସୁଗନ୍ଧ ଲାଭ କରିଥାଉଁ । ସେଠାରେ ଅନବରତ ନାନାବିଧ ସ୍ତୁତିବାକ୍ୟ ଉଚ୍ଚାରିତ ହୁଏ ଓ ସ୍ୱର୍ଗୀୟ କଳ୍ପବୃକ୍ଷରୁ ପୁଷ୍ପ ବୃଷ୍ଟି ହୋଇଥାଏ । ବିଷ୍ଣୁଙ୍କ ଏପରି ମହିମା ଆଉ ଅନ୍ୟତ୍ର କୌଣସି ସ୍ଥାନରେ ଦେଖାଯାଇ ନାହିଁ । ମହାରାଜ ! ସେଠାରେ ଏକ ପ୍ରାଚୀନ ବାର୍ତ୍ତା ଶ୍ରବଣ କରିଅଛୁଁ ଯେ, ଗୋଟିଏ କାକପକ୍ଷୀ ତିର୍ଯ୍ୟକ୍ ଜାତି ହେଲେ ସୁଦ୍ଧା ମାଧବଙ୍କୁ ଦର୍ଶନ କରି ମୁକ୍ତିଲାଭ କରିଥିଲା । ସେହି ଜ୍ଞାନହୀନ କାକପକ୍ଷୀ କୌଣସି ପୁଣ୍ୟକୃତ୍ୟରେ ଅଧିକାରୀ ନ ଥିଲା । ତଥାପି ପିପାସାର୍ତ୍ତ ହୋଇ ରୋହିଣୀକୁଣ୍ଡରେ ଜଳପାନ କରିବା ଆଶାରେ ଉପଗତ ହୋଇ କାଳବଶରୁ ପ୍ରାଣତ୍ୟାଗ କଲା ଓ ବିଷ୍ଣୁ-ସାଯୁଜ୍ୟ ମୁକ୍ତି ଲାଭ କଲା । ମୁଁ ମଧ୍ୟ ପୂର୍ବକାଳରେ ମୂର୍ଖ ଥିଲି । ବର୍ତ୍ତମାନ ତାଙ୍କ ଅନୁଗ୍ରହରୁ ଅଷ୍ଟାଦଶ ବିଦ୍ୟାରେ ପାରଙ୍ଗମ ହୋଇଅଛି; ଆଉ ମଧ୍ୟ ମୋର ବୁଦ୍ଧି ନିର୍ମଳ ହୋଇଅଛି । ମୁଁ ସବୁଠାରେ ବିଷ୍ଣୁଙ୍କୁ ଦର୍ଶନ କରୁଅଛି । ଆପଣ ବିଷ୍ଣୁଭକ୍ତ ଏବଂ ସଦା ଦୃଢ଼ବ୍ରତ । ତେଣୁ ମୁଁ ଆପଣଙ୍କୁ ଉପଦେଶ ଦେବାପାଇଁ ଏଠାକୁ ଆସିଅଛି । ମୁଁ ଆପଣଙ୍କ ନିକଟରୁ ଧନ କିମ୍ବା ଭୂମିପ୍ରାପ୍ତି ଆଶାରେ ଆସିନାହିଁ । ବର୍ତ୍ତମାନ ଆପଣ ପୁରୁଷୋତ୍ତମ କ୍ଷେତ୍ରରେ ଥିବା ପୁରୁଷୋତ୍ତମଙ୍କୁ ଭଜନ କରନ୍ତୁ । ସେହି ଜଟାଧାରୀ ତପସ୍ୱୀ ଇନ୍ଦ୍ରଦ୍ୟୁମ୍ନ ନରପତିଙ୍କୁ ଏପରି ଉପଦେଶ ଦେଇ ସର୍ବସମକ୍ଷରେ ଅନ୍ତର୍ହିତ ହେଲେ ।

---

## ପୁରୁଷୋତ୍ତମ କ୍ଷେତ୍ରର ତୀର୍ଥବାର୍ତ୍ତା ଅବଗତ ନିମିତ୍ତ ଇନ୍ଦ୍ରଦ୍ୟୁମ୍ନଙ୍କ ବିଦ୍ୟାପତିଙ୍କୁ ପ୍ରେରଣ

ରାଜା ସବିସ୍ମୟେ ବ୍ୟାକୁଳ ହୋଇ ଏହା ନିର୍ବାହ କରିବା ପାଇଁ ପୁରୋହିତଙ୍କୁ କହିଲେ କି, ହେ ଦ୍ୱିଜୋତ୍ତମ ! ଧର୍ମ୍ମ, ଅର୍ଥ, କାମ ତ୍ରିବର୍ଗ ଆପଣଙ୍କ ଅଧୀନରେ ଅଛି । ଆପଣଙ୍କ ଅନୁଗ୍ରହରୁ ଅବିରୋଧରେ ମୁଁ ଏହି ତ୍ରିବର୍ଗ ସାଧନ କରିଅଛି । ପୁରୁଷୋତ୍ତମ କ୍ଷେତ୍ରର ଅତି ଦୈବୀ ବୃତ୍ତାନ୍ତ

ମୁଁ ଅମାନୁଷ ଲୋକଙ୍କଠାରୁ ଶ୍ରବଣ କରି ଯେଉଁ ସ୍ଥଳରେ ସେହି ଗଦାଧରି ଅଛନ୍ତି, ତାହାଙ୍କ ନିକଟକୁ ଯିବାପାଇଁ ମୋ ବୁଦ୍ଧି ବେଗବତୀ ହେଉଅଛୁ । ଅତଏବ ହେ ଦ୍ୱିଜବର ! ଆପଣ ଏଥିପାଇଁ ବିଶେଷ ଯତ୍ନ କଲେ, ମୋର ସମ୍ପୂର୍ଣ୍ଣ ଫଳପ୍ରାପ୍ତି ହେବ ।

ପୁରୋହିତ ଏହା ଶୁଣି କହିଲେ କି, ମୁଁ ପ୍ରତିଜ୍ଞା କରି କହୁଛି ଯେ ସେହି ମୁକ୍ତିଦାତା କେଶବଙ୍କୁ ଏହି ଚର୍ମଚକ୍ଷୁ ଦ୍ୱାରା ଆପଣ ନିଶ୍ଚୟ ଦର୍ଶନ କରି ପାରିବେ । ସେହି ମହାପବିତ୍ର ପୁରୁଷୋତ୍ତମ କ୍ଷେତ୍ରକୁ ଆମ୍ଭେ ସମସ୍ତେ ଯାଇ ସେଠାରେ ଯେପରି ବାସ କରି ପାରିବା, ସେଥିସକାଶେ ମୁଁ ଯତ୍ନ କରିବି । ବର୍ତ୍ତମାନ ମୋ କନିଷ୍ଠ ଭ୍ରାତା ବିଦ୍ୟାପତି ଦେଶଭ୍ରମଣକାରୀ ଅନ୍ୟାନ୍ୟ ଚରଗଣଙ୍କ ସହିତ ସେଠାକୁ ଯାତ୍ରା କରିବ । ସେ ସ୍ଥଳକୁ ଯାଇ, ନୀଳଗିରିରେ ଜଗନ୍ନାଥଙ୍କୁ ଦର୍ଶନ କରି ବାସୋପଯୋଗୀ ନଗର ନିର୍ମାଣ ପାଇଁ ସ୍ଥାନ ନିର୍ଣ୍ଣୟ କରିବ ଓ ଯଥାଶୀଘ୍ର ଏଠାକୁ ଫେରିଆସି ଏ ସଂବାଦ ଦେଲେ ଆମ୍ଭର ଇଷ୍ଟ ସିଦ୍ଧହେବ ।

ଏହା ଶୁଣି ରାଜା କହିଲେ ଯେ, ମୁଁ ଆପଣଙ୍କ ଭ୍ରାତାଠାରୁ ଏ ସବୁ ବିଷୟ ଅବଗତ ହୋଇ ସେହି କ୍ଷେତ୍ରକୁ ଯାଇ ଭଗବାନଙ୍କ ନିକଟରେ ବାସ କରିବି ବୋଲି ସ୍ଥିର କରିଅଛି । ଅତଏବ ଆପଣଙ୍କ ଭ୍ରାତା ସେଠାକୁ ସତ୍ୱର ଗମନ କରି ଇଷ୍ଟ ସାଧନ କରନ୍ତୁ । ରାଜାଙ୍କ ଆଜ୍ଞାନୁସାରେ ପୁରୋହିତଙ୍କ ଭ୍ରାତା ବିଦ୍ୟାପତି ଉପଯୁକ୍ତ ଲୋକଙ୍କ ସହିତ ଶୁଭକ୍ଷଣରେ ପୁଷ୍ପକରଥରେ ଆରୋହଣ କରି ଜଗନ୍ନାଥଙ୍କୁ ଚିନ୍ତା କଲେ ଏବଂ ନିଜକୁ ଧନ୍ୟ ମଣି ଭଗବାନଙ୍କ ଦର୍ଶନ ପାଇଁ ନୀଳଗିରି ଶୃଙ୍ଗ ଅଭିମୁଖେ ଯାତ୍ରା କଲେ । ପୁଷ୍ପକ ରଥରେ ବସି ପ୍ରଭୁଙ୍କ ଜୟଗାନ କୀର୍ତ୍ତି କରି ନାନା ବନ ଗିରି, ଦୁର୍ଗ ଅତିକ୍ରମପୂର୍ବକ ଉତ୍କଳ ଦେଶରେ ଉପସ୍ଥିତ ହେଲେ ଏବଂ ସ୍ଥାନର ପବିତ୍ରତା ଓ ମନୋହରତା ଦେଖି ମହା ଆନନ୍ଦିତ ହେଲେ । ଏପରି ସବରେ ପୁଣ୍ୟତୋୟା ମହାନଦୀ ଓ ଏକାମ୍ରକାନନ [ଭୁବନେଶ୍ୱର] ଅତିକ୍ରମ କରି ସେ ନୀଳାଚଳ ପର୍ବତ ନିକଟରେ ଯାଇ ଉପସ୍ଥିତ ହେଲେ ଏବଂ ଦର୍ଶକମାନଙ୍କର ପାପନାଶକାରୀ ଅଭ୍ରଭେଦୀ ପର୍ବତ ମଧ୍ୟରେ କଳ୍ପବଟ ଓ ଚତୁଃପାର୍ଶ୍ୱରେ କାନନଶ୍ରେଣୀ ଦର୍ଶନ କଲେ । ଏହାକୁ ଅତି ଅଦ୍ଭୁତ ଓ ସାକ୍ଷାତ୍ ମୂର୍ତ୍ତିମାନ୍ ବିଷ୍ଣୁଙ୍କ ବାସସ୍ଥାନ ମଣିଲେ । ନୀଳାଚଳର ସନ୍ନିକଟ ଭୂମିରେ ଅବତରଣ କରି ମୋକ୍ଷଦାତା

ଭଗବାନଙ୍କ ଦର୍ଶନ ଇଚ୍ଛୁକ ବିଦ୍ୟାପତି ଚତୁର୍ଦ୍ଦିଗ ଅନୁସଂଧାନ କଲେ । ମାତ୍ର କୌଣସି ମାର୍ଗ ଦେଖିବାକୁ ପାଇଲେ ନାହିଁ । ପରେ ଭୂମିରେ କୁଶଯନ୍ତ୍ର ବିସ୍ତାର ସେଥିରେ ଶୟନ କରି ଭଗବାନଙ୍କ ଦର୍ଶନ ଆକାଂକ୍ଷାରେ ଶରଣାପନ୍ନ ହେଲେ ।

---

## ବିଦ୍ୟାପତି ଓ ଶବରରାଜ ବିଶ୍ୱାବସୁଙ୍କ ଉପାଖ୍ୟାନ

ଇତ୍ୟବସରରେ ବିଦ୍ୟାପତି ନୀଳାଚଳର ପଶ୍ଚାଦ୍‌ଭାଗରେ ଭଗବନ୍ତ ଭକ୍ତ ବିଷୟରେ ପରସ୍ପର ଆଳାପ କରୁଥିବା ଲୋକଙ୍କ ବାକ୍ୟ ଶ୍ରବଣ କଲେ ଓ ଆନନ୍ଦିତ ହୋଇ ଉକ୍ତ ବାକ୍ୟାନୁସରଣରେ ଗମନ କଲେ । ସେ ସ୍ଥଳରେ ଶବରଦୀପକ ନାମକ ବିଖ୍ୟାତ ଏକ କ୍ଷୁଦ୍ର ପଲ୍ଲୀ ଦେଖିଲେ । ତାହା ଶବରମାନଙ୍କ ବାସଗୃହଦ୍ୱାରା ପରିବେଷ୍ଟିତ । ବିଦ୍ୟାପତି ସେଠାରେ ଶଙ୍ଖ-ଚକ୍ର-ଗଦା-ପଦ୍ମଧାରୀ ବୈଷ୍ଣବମାନଙ୍କୁ ପ୍ରଣାମ କରି କରଯୋଡ଼ି ଦଣ୍ଡାୟମାନ ହେଲେ । ଇତ୍ୟବସରରେ ବିଶ୍ୱାବସୁ ନାମକ ଏକ ବୃଦ୍ଧ ଶବର ଭଗବାନଙ୍କ ଅର୍ଚ୍ଚନା ସମାପ୍ତ କରି ପୂଜାବଶିଷ୍ଟ ଚନ୍ଦନାଦିଦ୍ୱାରା ଶୋଭିତ ହୋଇନୀଳପର୍ବତରୁ ଓହ୍ଲାଇ ଆସି ବିଦ୍ୟାପତିଙ୍କୁ ଦେଖିଲେ । ବିଦ୍ୟାପତି ତାହାଙ୍କୁ ଦର୍ଶନ କରି ଆନନ୍ଦିତ ହେଲେ । ହୃଷ୍ଟମନା ବିଦ୍ୟାପତିଙ୍କୁ ଦେଖି କାହିଁକି "ଏହି ଦୁର୍ଗମ ଅରଣ୍ୟକୁ ଆସିଅଛ" ବୋଲି ଶବରରାଜ ତାଙ୍କୁ ପଚାରିଲେ । ସେ କ୍ଷୁଧା ଓ ତୃଷାରେ କ୍ଳାନ୍ତ ଶ୍ରାନ୍ତ ହୋଇଥିବାରୁ ତାଙ୍କୁ ଅବସ୍ଥାନ କରିବାକୁ କହିଲେ ଏବଂ ପାଦ୍ୟ, ଆସନ ଓ ଅର୍ଘ୍ୟ ଅର୍ପଣ କରି ଫଳାହାର କରିବେ କି ପାକ କରି ଅନ୍ନ ଭୋଜନ କରିବେ ଏଥିରେ ତାଙ୍କର ମତ ଲୋଡ଼ିଲେ । ସେ ଯାହା ଇଚ୍ଛା କରିବେ, ବିଶ୍ୱାବସୁ ପ୍ରସ୍ତୁତ କରି ଦେବେ ବୋଲି ଜଣାଇ କହିଲେ, ଆପଣ ସାକ୍ଷାତ୍ ବିଷ୍ଣୁ ସ୍ୱରୂପ ଏବଂ ଭାଗ୍ୟବଳରୁ ଆପଣଙ୍କୁ ମୋ ଗୃହରେ ଅତିଥିରୂପେ ପାଇକରି ଆଜି ମୋର ଜୀବନ ସଫଳ ହେଲା ।

ଏହା ଶୁଣି ବିଦ୍ୟାପତି କହିଲେ "ଭୋଜନ ସକାଶେ ଫଳ ବା ପାକାନ୍ନର କୌଣସି ପ୍ରୟୋଜନ ନାହିଁ । ମୁଁ ଯେଉଁ କାର୍ଯ୍ୟ-ପାଇଁ ଦୂରରୁ ଆସିଅଛି, ତାହା ଦୟାକରି ସଫଳ କରନ୍ତୁ ।"

ପୁଣି ସେ ନିବେଦନ କରି କହିଲେ "ମୁଁ ଅବନ୍ତୀପୁରବାସୀ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ପୁରୋହିତ । ବିଷ୍ଣୁଙ୍କ ଦର୍ଶନ କାମନାରେ ଆସିଅଛି ।" ତା ପରେ ସେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ରାଜସଭାରେ ଏକ ଜଟାଧାରୀ ସାଧୁ ଏହି ତୀର୍ଥ ସମ୍ବନ୍ଧରେ ଯାହା ବ୍ୟକ୍ତ କରିଥିଲେ, ତାହା ଆନୁପୂର୍ବିକ ଭାବରେ ବିଶ୍ୱାବସୁଙ୍କୁ ଶୁଣାଇଲେ ଓ ଏଥିସକାଶେ ମହାରାଜ ଉତ୍କଣ୍ଠିତ ହୋଇ ଅବସ୍ଥିତ ନୀଳମାଧବ ପ୍ରଭୁଙ୍କୁ ଦର୍ଶନ କରିବା ପାଇଁ ତାଙ୍କୁ ପଠାଇ-ଅଛନ୍ତି ବୋଲି ଜଣାଇ କହିଲେ ମୁଁ ତାହାଙ୍କୁ ଦର୍ଶନ କରି ମହାରାଜଙ୍କ ନିକଟକୁ ସମ୍ବାଦ ନେଇ ନ ଯିବା ପର୍ଯ୍ୟନ୍ତ ନିଶ୍ଚୟ ଅନାହାରରେ ରହିବି । ତେଣୁ ମୋତେ ସେହି ବିଷ୍ଣୁଙ୍କୁ ଦର୍ଶନ କରାଇ ଦିଅନ୍ତୁ ।"

ଏହା ଶୁଣି ଶବରରାଜ ବିଶ୍ୱାବସୁ ଅତି ଚିନ୍ତିତ ହେଲେ ଓ ମନେ ମନେ ଚିନ୍ତାକଲେ କି, ହାୟ ! ଆମ୍ଭମାନଙ୍କ ଦୁର୍ଭାଗ୍ୟ ଘଟିଲା । ଆମ୍ଭମାନଙ୍କ ଉପଜୀବ୍ୟ ଏହି ନିର୍ଜନସ୍ଥ ବିଷ୍ଣୁଙ୍କୁ ଏ ବ୍ରାହ୍ମଣଙ୍କୁ ଦେଖାଇଲେ ପ୍ରଭୁ ସର୍ବଜନବିଦିତ ହେବେ ଏବଂ ଏ ବ୍ରାହ୍ମଣଙ୍କୁ ଦର୍ଶନ ନ କରାଇଲେ ସେ ଶାପ ଦେବେ । ବିଶେଷତଃ ସର୍ବ ଜାତି ମଧ୍ୟରେ ବ୍ରାହ୍ମଣ ମାନ୍ୟ ଏବଂ ଏକେତ ଅତିଥିର ଅଭିଳାଷ ପୂର୍ଣ୍ଣ ନ ହେଲେ ମୋର ସବୁ ସତ୍କର୍ମ ଉଭୟ ଲୋକରେ ନିଷ୍ଫଳ ହେବ ।" ଏହା ଚିନ୍ତା କରୁ କରୁ ସେଠାକାର ପ୍ରାଚୀନ ଲୋକପ୍ରବାଦ ତାଙ୍କର ସ୍ମରଣ ହେଲା ଯେ ଏହି ସ୍ଥାନରେ ନୀଳମାଧବ ମୂର୍ତ୍ତି ଅନ୍ତର୍ହିତ ହେଲେ ବଳଶାଳୀ ଇନ୍ଦ୍ରଦ୍ୟୁମ୍ନ ନାମରେ ଏକ ରାଜା—ଯେ କି, ତାଙ୍କ ମନୁଷ୍ୟ ଶରୀରରେ ବ୍ରହ୍ମଲୋକ ପର୍ଯ୍ୟନ୍ତ ଯାଇ ପାରନ୍ତି, ପ୍ରଜାବର୍ଗଙ୍କ ସହିତ ଏଠାକୁ ଆସି ଏଠାରେ ଶତ ଶତ ଅଶ୍ୱମେଧଯଜ୍ଞ କରି ବିଷ୍ଣୁଙ୍କୁ ଦାରୁମୟ ଚତୁର୍ଦ୍ଧା ମୂର୍ତ୍ତିରେ ସ୍ଥାପନ କରିବେ । ସେ ଚିନ୍ତା କଲେ ଏହି ଅତିଥି ବ୍ରାହ୍ମଣଙ୍କ ଆଗମନଯୋଗୁଁ ଉକ୍ତ ଘଟଣା ନିଶ୍ଚୟ ଘଟିବ । ସୁତରାଂ ଏହାଙ୍କୁ ଏହି ଭଗବାନ ନୀଳମାଧବ ମୂର୍ତ୍ତିଙ୍କୁ ଦର୍ଶନ କରାଇବା ବିଧେୟ । ଯେହେତୁ ଭଗବାନ ଯାହା କରିବେ ତାର ବିରୁଦ୍ଧରେ ଲୋକଙ୍କର ଚେଷ୍ଟା କୌଣସି କାର୍ଯ୍ୟକାରୀ ହୋଇ ନ ପାରେ । ଶବରରାଜ ବିଶ୍ୱାବସୁ ମନେ ମନେ ପୁନଃ ପୁନଃ ଏହି ପ୍ରକାର ଆଲୋଚନା କରି ବିଦ୍ୟାପତିଙ୍କୁ କହିଲେ ଯେ ଇନ୍ଦ୍ରଦ୍ୟୁମ୍ନ ନାମକ ଏକ ମହାରାଜ ଏହି କ୍ଷେତ୍ରରେ ବାସ କରିବେ, ଏ ବୃତ୍ତାନ୍ତ ଆମ୍ଭେମାନେ ପୂର୍ବରୁ ଶୁଣିଅଛୁଁ ।

———

## ବିଶ୍ୱାବସୁଙ୍କ ଦ୍ୱାରା ବିଦ୍ୟାପତିଙ୍କ ନୀଳମାଧବ ଦର୍ଶନ

ତା ପରେ ଶବରରାଜ କହିଲେ 'ପ୍ରଭୁ ଇନ୍ଦ୍ରଦ୍ୟୁମ୍ନଙ୍କ ଆସିବା ଆଗରୁ ନୀଳମାଧବଙ୍କୁ ନିଜ ଚକ୍ଷୁରେ ଦର୍ଶନ କରିବେ । ତେଣୁ ଇନ୍ଦ୍ରଦ୍ୟୁମ୍ନଙ୍କ ଠାରୁ ଆପଣ ଅଧିକତର ଭାଗ୍ୟବାନ୍ । ହେ ବ୍ରହ୍ମନ୍ ! ଚାଲନ୍ତୁ, ଆମ୍ଭେମାନେ ପର୍ବତର ଉପରିଭାଗକୁ ଯିବା ।'' ଶବରରାଜ ଏହା କହି ବିଦ୍ୟାପତିଙ୍କ ହସ୍ତ ଧରି ଅତି ସଂକୀର୍ଣ୍ଣ ଓ କେବଳ ଜଣେ ମାତ୍ର ଲୋକର ଗମନୋପଯୋଗୀ, ପ୍ରସ୍ତର ଓ କଣ୍ଟକରେ ଆବୃତ ହେତୁ ଦୁର୍ଗମ ଓ ପ୍ରାୟ ଅନ୍ଧକାରମୟ ପଥରେ ଗମନ କଲେ । ଏହି ମାର୍ଗରେ ଯିବା ସମୟରେ ଶବରରାଜ ବିଦ୍ୟାପତିଙ୍କୁ ପ୍ରବୋଧଦେଇ ନୀଳମାଧବଙ୍କ ବିଷୟ ବୁଝାଇ ବୁଝାଇ ଦୁଇ ମୁହୂର୍ତ୍ତମଧ୍ୟରେ ରୋହିଣୀକୁଣ୍ଡ ତଟରେ ଉପସ୍ଥିତ ହେଲେ । ଏହି କୁଣ୍ଡକୁ ଦେଖାଇ ସେ ବିଦ୍ୟାପତିଙ୍କୁ କହିଲେ ଏହି ମହାତୀର୍ଥର ନାମ ରୋହିଣୀକୁଣ୍ଡ । ଏଠାରେ ସ୍ନାନକରି ମାଧବଙ୍କୁ ଦର୍ଶନ କଲେ ମୁକ୍ତିଲାଭ ହୁଏ । ଏହାର ପୂର୍ବଭାଗରେ କଳ୍ପ ପର୍ଯ୍ୟନ୍ତ ସ୍ଥାୟୀ ଏହି ଯେଉଁ ମହାନ୍ ଅକ୍ଷୟ ବଟବୃକ୍ଷ ଅଛି, ସେହି ବଟବୃକ୍ଷର ଛାୟା ଲାଭ କଲେ ବ୍ରହ୍ମହତ୍ୟାଦି ସକଳ ପାପ କ୍ଷୟ ହୁଏ । ଏହି ରୋହିଣୀକୁଣ୍ଡ ଏବଂ ଅକ୍ଷୟବଟ ମଧ୍ୟସ୍ଥ ନିକୁଞ୍ଜକାନନରେ ବେଦପ୍ରସିଦ୍ଧ ସାକ୍ଷାତ୍ ଜଗନ୍ନାଥ ବିରାଜମାନ କରୁଅଛନ୍ତି । ଆପଣ ତାହାଙ୍କୁ ଦର୍ଶନ କରି ନାନାବିଧ ସଞ୍ଚିତ ପାପରୁ ମୁକ୍ତ ହେବେ । ଏଣିକି ସଂସାର-ସାଗରରେ ପତିତ ଥାଇ ଆଉ ଶୋକ କରିବାକୁ ହେବ ନାହିଁ ।''

ବିଦ୍ୟାପତି ଏହା ଶ୍ରବଣ କରି ଅତି ଆନନ୍ଦରେ ନତମସ୍ତକ ହୋଇ ଜଗନ୍ନାଥ ଦେବଙ୍କୁ ପ୍ରଣାମ କରି ସ୍ତବ କଲେ । ନାନାବିଧ ସ୍ତବାନ୍ତେ ସେ ପ୍ରାର୍ଥନା କଲେ କି, ମୁଁ ଅସାର ସଂସାର ମଧ୍ୟରେ ଭ୍ରମଣ କରି ପୀଡ଼ିତ ହୋଇଅଛି । ସମ୍ପ୍ରତି ଆପଣଙ୍କ ପାଦପଦ୍ମରେ ଶରଣାପନ୍ନ ହେଲି । ହେ ଦେବଦେବ ! ଦୟା କରି ମୋତେ ଏହି ସଂସାର-କ୍ଲେଶ ସମୂହରୁ ଉଦ୍ଧାର କର ।

ଏହା ପ୍ରାର୍ଥନା କରି ସେ ପ୍ରଭୁଙ୍କ ସମୀପରେ ଉପସ୍ଥିତ ହୋଇ ପ୍ରଣବ ମନ୍ତ୍ର ଜପ କଲେ ଓ ନିଜକୁ କୃତାର୍ଥ ମନେକଲେ ।

## ବିଶ୍ୱାବସୁଙ୍କର ବିଦ୍ୟାପତିଙ୍କ ପ୍ରତି ଅତିଥିସତ୍କାର

ତା'ପରେ ଶବରରାଜ ବିଶ୍ୱାବସୁ ପୁରୋହିତ ବିଦ୍ୟାପତିଙ୍କୁ କହିଲେ, "ସମ୍ପ୍ରତି ବିଭାବରୀ ନିକଟ ସମୟ । ପୁଣି ତୁମ୍ଭେ କ୍ଷୁଧାର୍ତ୍ତ ଓ କ୍ଲାନ୍ତଶ୍ରାନ୍ତ ହୋଇ ପଡ଼ିଅଛ । ଏ ଅରଣ୍ୟରେ ମଧ୍ୟ ନାନାବିଧ ହିଂସ୍ରଜନ୍ତୁ ଅଛନ୍ତି । ତେଣୁ ଏଠାରେ ଆଜି ଆମ୍ଭମାନଙ୍କର ରହିବା ଉଚିତ ନୁହେ । ଚାଲନ୍ତୁ, ଘରକୁ ଯିବା ।" ଏହା କହି ବିଶ୍ୱାବସୁ ବିଦ୍ୟାପତିଙ୍କ ହାତ ଧରି ସତ୍ୱର ନିଜର ଆଳୟକୁ ଗମନ କଲେ । ବିଦ୍ୟାପତି ପ୍ରଭୁ ଜଗନ୍ନାଥଙ୍କୁ ମନେ ମନେ ଧ୍ୟାନ କରି ଆନନ୍ଦସାଗରରେ ମଗ୍ନ ହୋଇଥିବା ହେତୁ ନିଜ କ୍ଷୁଧା ପିପାସା ଓ ଶ୍ରମଜନିତ କ୍ଲେଶ କିଛି ଜାଣିପାରିଲେ ନାହିଁ । ପରେ ସେମାନେ ସାୟଂକାଳରେ ଶବର ଗୃହରେ ପ୍ରବେଶ କଲେ । ବିଶ୍ୱାବସୁ ଅତିଥି ବ୍ରାହ୍ମଣଙ୍କୁ ନାନାବିଧ ଭୋଜ୍ୟ ଦ୍ରବ୍ୟ ଦ୍ୱାରା ସୁଶୃଙ୍ଖଳରୂପେ ସତ୍କାର କଲେ । ଶବରଙ୍କ ଘରେ ଦୁର୍ଲ୍ଲଭ ରାଜଭୋଗ୍ୟ ଉପଚାର ପ୍ରାପ୍ତ ହୋଇ ବିଦ୍ୟାପତି ସାତିଶୟ ବିସ୍ମିତ ହେଲେ । ଏହି ଦୁର୍ଗମ ଅରଣ୍ୟରେ କେବଳ ଶବରମାନେ ବାସ କରନ୍ତି । ଏ ରାଜଭୋଗ୍ୟ ଖାଦ୍ୟ ଏହାଙ୍କ ଗୃହକୁ କିପରି ଆସିଲା – ଏପରି ମନରେ ଚିନ୍ତା କରୁ କରୁ ଶବରରାଜ ମଧୁର ବାକ୍ୟରେ କହିଲେ "ଯେ ବନବାସୀଙ୍କ ଘରେ ନଗରବାସୀଙ୍କ ଭଳି ସହଜରେ ସୁଖ ମିଳେ ନାହିଁ । ବିଶେଷତଃ ରାଜାଶ୍ରିତ ଲୋକଙ୍କ ମଧ୍ୟରେ ପୁରୋହିତ ଓ ମନ୍ତ୍ରୀ ଶ୍ରେଷ୍ଠ । ତନ୍ମଧ୍ୟରେ ପୁରୋହିତଙ୍କୁ ରାଜାଙ୍କ ପରି ପୂଜା କରିବା ବିଧେୟ; ଏହା ଶାସ୍ତ୍ରସମ୍ମତ । ଆପଣ ସନ୍ତୁଷ୍ଟ ହେଲେ ସାର୍ବଭୌମ ପ୍ରତାପଶାଳୀ ମହାରାଜା ଇନ୍ଦ୍ରଦ୍ୟୁମ୍ନ ସନ୍ତୁଷ୍ଟ ହେବେ ।"

ବିଶ୍ୱାବସୁଙ୍କଠାରୁ ବିଦ୍ୟାପତି ଏ କଥା ଶୁଣି ଅତି ସନ୍ତୁଷ୍ଟ ହୋଇ କହିଲେ ' ତୁମ୍ଭ ପ୍ରଦତ୍ତ ଭୋଜନର ସମସ୍ତ ଦ୍ରବ୍ୟ ମନୁଷ୍ୟକୃତ ବୋଲି ମନେ ହେଉନାହିଁ । ମହାରାଜାମାନେ ମଧ୍ୟ ଏପରି ଖାଦ୍ୟ ସାମଗ୍ରୀ ପାଆନ୍ତି ନାହିଁ । ଏ ସବୁ ଦିବ୍ୟ ପଦାର୍ଥ ଶବର ଗୃହରେ କିପରି ସଞ୍ଚୟ କରାଗଲା, ଏହା ଜାଣିବାପାଇଁ ମୋର କୌତୁହଳ ଜନ୍ମୁଅଛି । ଶବରରାଜ ବିଶ୍ୱାବସୁ କହିଲେ ଯେ, ଆପଣ ବ୍ରାହ୍ମଣ ଓ ଅତିଥି । ଏହା ପ୍ରକାଶ କରିବାକୁ ମୋର ଇଚ୍ଛା ନ ହେଲେ ମଧ୍ୟ ଆପଣଙ୍କ ପ୍ରତି ଶ୍ରଦ୍ଧା ଓ

ଭକ୍ତ ଜଣାଇବା ପାଇଁ କହୁଅଛୁ, "ଜଗନ୍ନାଥଙ୍କ ପୂଜା ପାଇଁ ଇନ୍ଦ୍ରାଦି ଦେବତାମାନେ ଯେଉଁ ଦ୍ରବ୍ୟବସ୍ତୁ ଏଠାକୁ ନେଇଆସନ୍ତି, ସେମାନେ ସେହି ନୈବେଦ୍ୟ ଜଗନ୍ନାଥଙ୍କୁ ଅର୍ପଣ କରି ସ୍ତବ ଓ ପୂଜା ପ୍ରଭୃତିରେ ସନ୍ତୁଷ୍ଟ କରି ସ୍ୱର୍ଗକୁ ଫେରି ଯାଇଥାନ୍ତି।" ପ୍ରଭୁ ଜଗନ୍ନାଥଙ୍କ ଏହି ଦ୍ରବ୍ୟ ନିର୍ମାଲ୍ୟ ଆପଣଙ୍କୁ ଦେଇଅଛୁ। ସୁତରାଂ ଆପଣ ବଞ୍ଚିତ ହେବେନାହିଁ। ବିଷ୍ଣୁଙ୍କ ଏହି ନିର୍ମାଲ୍ୟ ଭୁଞ୍ଜି ମୁଁ ରୋଗ, ଶୋକ ଓ ବୃଦ୍ଧାବସ୍ଥାକୁ ଦୂରକରି ପୁତ୍ରାଦି ଓ ବାନ୍ଧବମାନଙ୍କ ସହିତ ଅଯୁତ ବର୍ଷ ( ୧୦ ହଜାର ବର୍ଷ ) ଜୀବିତ ଥାଇ ସୁଖରେ ବାସ କରୁଅଛୁ। ଯେଉଁ ପ୍ରସାଦ ସେବନ କଲେ ମୁକ୍ତିଲାଭ ହୁଏ, ତାହାର ସେବନରେ ସାମାନ୍ୟ ପାପରାଶି ବିନଷ୍ଟ ହେବା କଥା—ଆଶ୍ଚର୍ଯ୍ୟ ବୋଲି ଭାବିବେ ନାହିଁ।"

ବିଦ୍ୟାପତି ଏହା ଶୁଣି କୃତାର୍ଥ ହେଲେ ଓ ମନେ ମନେ ଚିନ୍ତା କଲେ କି, ଏ ଲୋକ ଶବର ବଂଶରେ ଜନ୍ମଗ୍ରହଣ କରି ଭଗବାନଙ୍କୁ ପ୍ରତ୍ୟକ୍ଷ ଦର୍ଶନ ଓ ତାହାଙ୍କ ଦ୍ରବ୍ୟ ନିର୍ମାଲ୍ୟ ଭୋଗ କରୁଅଛି କିପରି ? ଏ ନୀଳପର୍ବତବାସୀ ଶବର ଯେପରି ବିଷ୍ଣୁଭକ୍ତ, ସେପରି ଚରାଚର ଜଗତରେ ଆଉ କେହି ନାହାନ୍ତି। ମୁଁ ଅବନ୍ତୀପୁର ନିଜ ଘରକୁ ଯାଇ କୁଟୁମ୍ବବର୍ଗଙ୍କ ସହ ଏଠାକୁ ଫେରିଆସି ଏହି ଶବରଙ୍କ ସହିତ ମିତ୍ରତା ସ୍ଥାପନ କରି ଏହି ଅରଣ୍ୟରେ ବାସ କରିବି। ଏହା ଭାବି ସେ ଶବରରାଜଙ୍କୁ କହିଲେ, "ମୁଁ ଆପଣଙ୍କ ସହିତ ମିତ୍ରତା କରିବାକୁ ଇଚ୍ଛେଁ ଏବଂ ମାୟା-ବନ୍ଧନରେ ଆବଦ୍ଧ ନ ରହି ଆପଣଙ୍କ ସହିତ ଏଠାରେ ଜଗନ୍ନାଥଙ୍କୁ ଉପାସନା କରିବି।"

## ବିଶ୍ୱାବସୁଙ୍କ ପ୍ରତି ବିଦ୍ୟାପତିଙ୍କ କୃତଜ୍ଞତା ପ୍ରକାଶ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନର ସୂଚନା

ପୂର୍ବୋକ୍ତ ବିଦ୍ୟାପତି ଶବରରାଜ ବିଶ୍ୱାବସୁଙ୍କୁ ପୁଣି କହିଲେ ଯେ, "ହେ ସାଧୁପ୍ରବର ! ସୌଭାଗ୍ୟକ୍ରମେ ତୁମ୍ଭ ସହିତ ଆଜି ମୋର ମିଳନ ହେଲା । ତୁମ୍ଭ ଅନୁଗ୍ରହରୁ ମୁଁ ଏହି ଦୁସ୍ତର ସଂସାର-ସାଗରରୁ ପାରହେବାକୁ କ୍ଷମ ହେବି । କାରଣ ବିଷ୍ଣୁଭକ୍ତଙ୍କ ସହିତ ମିତ୍ରତା ଘଟିଲେ ସଂସାର-କ୍ଲେଶର ଅବସାନ ହୁଏ । ବିଷ୍ଣୁଭକ୍ତ-ମାନଙ୍କ ସହିତ ମିତ୍ରତା କରିବା, ଶ୍ରେଷ୍ଠ ଧର୍ମ ବୋଲି ସଜ୍ଜନମାନେ କହି ଅଛନ୍ତି । ବିଶେଷତଃ ବିଷ୍ଣୁଭକ୍ତଙ୍କ ବନ୍ଧୁତା ଓ ସାହଚର୍ଯ୍ୟ ଶଙ୍ଖଚକ୍ରଗଦାପଦ୍ମଧାରୀ ଭଗବାନଙ୍କ ସାକ୍ଷାତ ଘଟେ । ହେ ସଖେ ! ମୁଁ ଏଠାରୁ ଫେରି ଜଣାଇଲେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଭଗବାନଙ୍କ ଆରାଧନା ନିମିତ୍ତ ଏଠାକୁ ଆସି ବାସ କରିବେ ଏବଂ ସେ ପୁରୁଷୋତ୍ତମ ଭଗବାନଙ୍କ ପ୍ରୀତି ନିମନ୍ତେ ବୃହତ୍ ପ୍ରାସାଦ ନିର୍ମାଣ କରିବେ ଓ ପ୍ରଭୁଙ୍କ ପୂଜା ଆରାଧନା ନିମିତ୍ତ ବିବିଧ ଉପଚାର ସଂପାଦନ କରିବେ ବୋଲି ପ୍ରତିଜ୍ଞା କରି ଅଛନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କର ଦେବପୂଜା ପାଇଁ ଉପଯୁକ୍ତ ସ୍ଥାନ ନିର୍ଣ୍ଣୟ କରି ତାହାଙ୍କୁ ଜଣାଇବା ନିମନ୍ତେ ମୁଁ ପ୍ରତିଶ୍ରୁତି ଦେଇଅଛି ।"

ଏହା ଶୁଣି ଶବରରାଜ କହିଲେ, "ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନ ବିଷୟରେ ଏହି କ୍ଷେତ୍ର ସମ୍ବନ୍ଧରେ ପୂର୍ବକାଳରୁ ଜନଶ୍ରୁତି ଅଛି । ମାତ୍ର ସେ ଏହି ନୀଳମାଧବଙ୍କୁ ଦର୍ଶନ କରି ପାରିବେ ନାହିଁ । କାରଣ ଅଳ୍ପକାଳ ମଧ୍ୟରେ ଭଗବାନ ଅବସ୍ଥ ସ୍ୱର୍ଣ୍ଣ ବାଲୁକାଦ୍ୱାରା ଆବୃତ୍ତ ହୋଇ ଅନ୍ତର୍ହିତ ହେବେ । ଏ କଥା ସ୍ୱୟଂ ଭଗବାନ ଯମଙ୍କ ନିକଟରେ କହିଅଛନ୍ତି । ମାତ୍ର ଆପଣ । ମହାଭାଗ୍ୟବାନ ହୋଇଥିବାରୁ ନୀଳମାଧବଙ୍କୁ ଦର୍ଶନ କରିଅଛନ୍ତି । ଇନ୍ଦ୍ରଦ୍ୟୁମ୍ନଙ୍କ ଆସିବା ପୂର୍ବରୁ ଭଗବାନ ଯେ ନିଶ୍ଚୟ ଅନ୍ତର୍ହିତ ହେବେ, ତାହା ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ପ୍ରକାଶ କରିବ ନାହିଁ । ସେ ନୀଳମାଧବ ଭଗବାନଙ୍କ ଦର୍ଶନ ନ ପାଇ ଆଜୀବନ ମରଣ ବ୍ରତରେ ବ୍ରତୀ ହେବେ ଓ ସ୍ୱପ୍ନାଦିଷ୍ଟକ୍ରମେ ପ୍ରଭୁଙ୍କ ଚତୁର୍ଦ୍ଧା ମୂର୍ତ୍ତି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇ ଭକ୍ତିରେ ପୂଜା କରିବେ । ଏହି

କ୍ଷେତ୍ରରେ ହରି ବିରାଜମାନ କରୁଥିବା ପର୍ଯ୍ୟନ୍ତ ଆମ୍ଭ ଉଭୟଙ୍କ ବଂଶୀୟ ଲୋକେ ମଧ୍ୟ ଥିବେ; ଏଥିରେ ସନ୍ଦେହ ନାହିଁ । ଆପଣ ବର୍ତ୍ତମାନ ସମସ୍ତ ଖେଦ ପରିତ୍ୟାଗ କରନ୍ତୁ । କାଲି ପ୍ରାତଃକାଳରେ ଆମ୍ଭେମାନେ ମହୋଦଧିକୁ ସ୍ନାନ କରିବାକୁ ଯିବା ଏବଂ ତାହାର ତଟରେ ମହାରାଜଙ୍କ ବାସୋପଯୋଗୀ ସ୍ଥାନ ଓ ସାଧୁଲୋକଙ୍କ ପାଇଁ ବାସୋ-ପଯୋଗୀ ସ୍ଥାନ ମଧ୍ୟ ଦେଖି ସ୍ଥିର କରିବା ।''

ଏହିପରି ନାନା କଥୋପକଥନ କରି ଉଭୟେ ରାତିଯାପନ କଲେ । ପରଦିନ ପ୍ରାତଃକାଳରେ ବିଦ୍ୟାପତି ତୀର୍ଥରାଜ ସମୁଦ୍ର ଜଳରେ ବିଧିପୂର୍ବକ ସ୍ନାନ ଓ ନୀଳମାଧବଙ୍କ ଦର୍ଶନ କରିବା ପରେ ମହାରାଜାଙ୍କ ବାସସ୍ଥାନ ନିର୍ଣ୍ଣୟ କଲେ ଓ ଅଶ୍ୱାରୂଢ଼ ହୋଇ ପୁରୁଷୋତ୍ତମ କ୍ଷେତ୍ରସ୍ଥ ତୀର୍ଥ ଓ ରମଣୀୟ ସ୍ଥାନମାନ ପରିଭ୍ରମଣ କରି ଗୃହକୁ ଫେରିଲେ ଏବଂ ଶବର ରାଜାଙ୍କ ସହିତ ପରାମର୍ଶ କରି ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ସମ୍ବାଦ ଦେବାପାଇଁ ଅବନ୍ତୀପୁରକୁ ପ୍ରସ୍ଥାନ କଲେ ।

---

## ନୀଳମାଧବଙ୍କର ଅନ୍ତର୍ଦ୍ଧାନ ଓ ରୋହଣୀକୁଣ୍ଡର ଅଦୃଶ୍ୟ କଥା

"ପ୍ରତ୍ୟାଗତେ ତତୋ ବିପ୍ରେ ସାୟାହ୍ନେ ସୁରସଙ୍କୁଳେ
ମାଧବାର୍ଚ୍ଚନ-ବେଳାୟାଂ ବାତଶ୍ଚଣ୍ଡ ଗତୋ ବବୌ ।
ସମୁଦ୍ର ବାଲୁକାସ୍ତାସୌ ବିଚକାର ଚ ସର୍ବଶଃ
ତେନାକୁଳଦୃଶୋଦେବା ନ ଶେକୁରବ ଲୋକନେ ।
ଶ୍ରୀକାନ୍ତସ୍ୟ ତଦାବିପ୍ରା ଦଧ୍ୟୁସ୍ତେ ପୁରୁଷୋତ୍ତମଂ
ଯାବଦ୍ ଧ୍ୟାନ ସ୍ଥିରଦୃଶୋ ମୁହୂର୍ତ୍ତଂତେ ଦିବୌକସଃ ।
ଧ୍ୟାନାନ୍ତେ ବାଲୁକା ବୃଷ୍ଟିଂ ଦଦୃଶୁର୍ନଚ ମାଧବଂ
ରୋହଣୀଞ୍ଚ ତୀର୍ଥକୁଣ୍ଡଂବଭୂବୁ ର୍ବ୍ୟାକୁଳେନ୍ଦ୍ରିୟାଃ—ଇତ୍ୟାଦି ।

ବିଦ୍ୟାପତି ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିବା ପରେ ସେ ଦିନ ସାୟଂକାଳୀନ ପୂଜାପାଇଁ ସେଠାକୁ ଦେବତାମାନେ ଆସିଲେ । ଏପରି ସମୟରେ ବାୟୁ ପ୍ରଚଣ୍ଡ ବେଗରେ ପ୍ରବାହିତ ହେବାରୁ ସମୁଦ୍ର ତଟସ୍ଥ ବାଲୁକା ରାଶି ଚତୁର୍ଦ୍ଦିଗରେ ବିକ୍ଷିପ୍ତ ହେଲା । ଏଥିରେ ଦେବଗଣଙ୍କ ଗତିରୋଧ ହେବାରୁ ସେମାନେ ପୁରୁଷୋତ୍ତମଙ୍କୁ ଦର୍ଶନ ପାଇଁ ଅସମର୍ଥ

ହୋଇ ଧ୍ୟାନ କଲେ । ମୁହୂର୍ତ୍ତିକାଳ ପରେ ଦେବତାମାନେ ଧ୍ୟାନ ଶେଷରେ ଚତୁର୍ଦ୍ଦିଗରେ ବାଲୁକାରାଶି ଦେଖିଲେ । ଦୁଃଖର କଥା ନୀଳମାଧବଙ୍କୁ ଓ ରୋହିଣୀକୁଣ୍ଡକୁ ସେଠାରେ ଆଉ ଦେଖିବାକୁ ପାଇଲେ ନାହିଁ ! ତେଣୁ ଦେବତାମାନେ ଅତ୍ୟନ୍ତ ଚିନ୍ତିତ ହୋଇ ରୋଦନପୂର୍ବକ ସ୍ତବ କଲେ । ସ୍ତବାନ୍ତେ ନିବେଦନ କଲେ, "ଆମ୍ଭମାନଙ୍କୁ ଆପଣ ଛାଡ଼ିଲେ; ଆମ୍ଭର ସକଳ ବିଷୟ ବ୍ୟର୍ଥ ହେଲା । ଏଣିକି ଆମ୍ଭେମାନେ ବନବାସୀ ହେବୁଁ । ଆପଣଙ୍କ ନିଷ୍କଳଙ୍କ ଚନ୍ଦ୍ରମୁଖ ଦର୍ଶନ ନ କରିବା ପର୍ଯ୍ୟନ୍ତ ଆମ୍ଭେ ଆଉ ଦେବଲୋକକୁ ଯିବୁ ନାହିଁ; ଏହିଠାରେ କଠୋର ତପସ୍ୟା ଆରମ୍ଭ କରିବୁଁ ଏବଂ ଆପଣଙ୍କ ଦର୍ଶନ ନ ପାଇଲେ ଆମ୍ଭେମାନେ ଜଟାବଲ୍କଳଧାରୀ ବନବାସୀ ହୋଇ ରହିବୁଁ । ହେ କୃପାମୟ ! ଆମ୍ଭେ ଅନାଥ ଓ ଦୀନ; ଆପଣଙ୍କ ଶରଣାପନ୍ନ ହେଲୁଁ । ଆମ୍ଭଙ୍କୁ ପରିତ୍ରାଣ କରନ୍ତୁ ।" ଏପରି ଭାବରେ ଦେବଗଣ ବିଳାପ କରୁଥିବା ସମୟରେ ସହସା ଆକାଶବାଣୀ ହେଲା, "ଏଠାରେ ଭଗବାନ ପୁଣି ଆବିର୍ଭୂତ ହେବେ । ପୃଥିବୀରେ ଆଜିଠାରୁ କିଛି କାଳ ପର୍ଯ୍ୟନ୍ତ ଭଗବଦ୍‌ଦର୍ଶନ ଦୁର୍ଲଭ ହେବ । ଏଥିର ବୃତ୍ତାନ୍ତ ଅବଗତ ହେବାପାଇଁ ତୁମ୍ଭେ ବ୍ରହ୍ମାଙ୍କ ନିକଟକୁ ଗମନ କର ।" ଏହା ପରେ ଦେବତାମାନେ ବ୍ରହ୍ମାଙ୍କ ନିକଟକୁ ଗମନ କଲେ ଓ ବ୍ରହ୍ମାଙ୍କଠାରୁ ଯମଙ୍କ ପ୍ରତି ପ୍ରଭୁଙ୍କ ଅନୁଗ୍ରହ ବୃତ୍ତାନ୍ତ ଓ ଭଗବାନଙ୍କ ଦାରୁବ୍ରହ୍ମରୂପରେ ଅବତାର ହେବାର କଥା ଶ୍ରବଣ କରି ସାନନ୍ଦରେ ସ୍ୱର୍ଗକୁ ପ୍ରତ୍ୟାବର୍ତ୍ତନ କଲେ ।

---

## ବିଦ୍ୟାପତିଙ୍କ ଦ୍ୱାରା ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ପ୍ରଭୁଙ୍କ ନିର୍ମାଲ୍ୟ ମାଳା ଦାନ ଓ ନୀଳାଚଳ କଥା ବର୍ଣ୍ଣନ

ଏଣେ ବ୍ରାହ୍ମଣ ବିଦ୍ୟାପତି ଅବନ୍ତୀନଗରକୁ ଯିବାପାଇଁ ରଥ ଆରୋହଣ କରି ବିଚାର କଲେ, ଏବେ ନୀଳମାଧବଙ୍କ ଦର୍ଶନ ପରେ ମୋର ସକଳ କାର୍ଯ୍ୟ ସମ୍ପନ୍ନ ହେଲା । ଏଣିକି ଏହି କ୍ଷେତ୍ରଧାମର ଚତୁର୍ଦ୍ଦିଗ ଭ୍ରମଣ କରି ସକଳ ବିଷୟ ମୋର ଦେଖିବା ଉଚିତ । ଯେହେତୁ ଯାହାଙ୍କ ନାମ କୀର୍ତ୍ତନ କଲେ ସକଳ ପାପ କ୍ଷାଳନ ହୁଏ, ସେହି ଅଶେଷ-କଳୁଷ-ଧ୍ୱଂସୀ ଭଗବାନଙ୍କ ପୁରୁଷୋତ୍ତମକ୍ଷେତ୍ରକୁ ଯେଉଁମାନେ ପ୍ରଦକ୍ଷିଣ

କରନ୍ତି, ପୃଥିବୀର ଶତବାର ପ୍ରଦକ୍ଷିଣ କରିବାର ଫଳ ସେମାନେ ଲାଭ କରନ୍ତି । ଏହା ମୁଁ ମିତ୍ରଙ୍କଠାରୁ ଶୁଣିଅଛି । ବିଦ୍ୟାପତି ଏପରି ଚିନ୍ତା କରି ଚୈତ୍ୟ ପର୍ବତମୟ ତୀର୍ଥସ୍ଥାନ ଓ ନାନା ତରୁଲତା ଫଳ-ପୁଷ୍ପ-ଶୋଭିତ ପୁରୁଷୋତ୍ତମ କ୍ଷେତ୍ର ପରିଭ୍ରମଣ କରି ଦର୍ଶନ କଲେ । ଏହି କ୍ଷେତ୍ରରେ ସକଳ ଋତୁର ପୁଷ୍ପ ସର୍ବଦା ଏକ ସମୟରେ ବିକଶିତ ହେଉଥିବା ଦେଖି ସେ ମହା ଆନନ୍ଦିତ ହେଲେ । ଶ୍ରୀକ୍ଷେତ୍ରର ବିଭିନ୍ନ ସ୍ଥାନ ପରିଦର୍ଶନ ପରେ ରଥ ଆରୋହଣ କଲେ ଓ ନିରାହାରରେ ଜଗନ୍ନାଥଙ୍କୁ ଧ୍ୟାନ କରି ସାୟଂକାଳରେ ଅବନ୍ତୀନଗରରେ ଉପସ୍ଥିତ ହେଲେ ।

ବିଦ୍ୟାପତିଙ୍କ ଆଗମନବାର୍ତ୍ତା ମହାରାଜ ଇନ୍ଦ୍ରଦ୍ୟୁମ୍ନ ଦୂତମାନଙ୍କଠାରୁ ଶ୍ରବଣ କରି ଅତି ସନ୍ତୁଷ୍ଟ ହେଲେ ଏବଂ ପ୍ରଭୁଙ୍କ ପୂଜା ସମାପନ କରି ବିଦ୍ୱାନ୍ ବ୍ରାହ୍ମଣମାନଙ୍କ ସହିତ ସାନନ୍ଦରେ ବିଦ୍ୟାପତିଙ୍କର ଆଗମନର ପ୍ରତୀକ୍ଷା କଲେ । ଇତ୍ୟବସରରେ ବିଦ୍ୟାପତି ପ୍ରଭୁ ନୀଳମାଧବଙ୍କର ପରମ ରମଣୀୟ ନିର୍ମାଲ୍ୟମାଳା ହସ୍ତରେ ଧାରଣ କରି ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟରେ ଉପସ୍ଥିତ ହେଲେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ବିଦ୍ୟାପତିଙ୍କୁ ଦେଖି ନିଜେ ସିଂହାସନରୁ ଉଠି 'ପ୍ରସିଦ ଜଗଦୀଶେତି' ଅର୍ଥାତ୍ 'ଜଗଦୀଶ ପ୍ରସନ୍ନ ହୁଅ' କହି କହି ବିଦ୍ୟାପତିଙ୍କ ନିକଟରେ ଉପସ୍ଥିତ ହେଲେ ଓ ପ୍ରଭୁଙ୍କ ନିର୍ମାଲ୍ୟର ମାଳା ଦର୍ଶନ କରି ମନେ ମନେ ନିଜକୁ ଧନ୍ୟ ମଣିଲେ । ଏହି ନିର୍ମାଲ୍ୟମାଳାର ଦର୍ଶନ ଦ୍ୱାରା ନିଜ ଗୃହରେ ଥାଇ ମୁଁ ଶ୍ରୀମାଧବଙ୍କୁ ଦର୍ଶନ କରି ପାରୁଅଛି ବୋଲି ମନେ ମନେ ଚିନ୍ତା କରି ସେହି ମାଳାକୁ ନମସ୍କାର କଲେ ଓ ଏହି ଅନବଦ୍ୟ ଓ ଅନୁପମ ସୌରଭର ତୁଳନା କଳ୍ପ-ପାଦପ-କୁସୁମରେ ନ ଥିବ ବୋଲି ଅନୁଭବ କଲେ । ସେ ପୁନର୍ବାର ସ୍ତବ କଲେ, ଏହି ମାଲ୍ୟଗନ୍ଧ ମିଶ୍ରିତ ବାୟୁଦ୍ୱାରା ଜଗତର ପାପରାଶି କ୍ଷୟ ହୁଏ । ବ୍ରହ୍ମାଦି-ଦେବତା ଯାହାଙ୍କର ପଦାରବିନ୍ଦ ଲାଭ କରି ସ୍ୱର୍ଗୀୟ ସମ୍ପଦର ଅଧିକାରୀ ହୋଇଅଛନ୍ତି, ସେହି ବିଷ୍ଣୁଙ୍କ କଳେବରର ସଂସ୍ପର୍ଶରେ ପବିତ୍ର ଏବଂ ତାହାଙ୍କର ଅଙ୍ଗରାଗରେ ରଞ୍ଜିତ ମନୋହର ହେ ନିର୍ମାଲ୍ୟର ମାଳା ! ମୁଁ ପ୍ରଣାମ କରୁଅଛି— ଇତ୍ୟାଦି ନାନାବିଧ ସ୍ତବ କରି ଭକ୍ତିଭାବରେ ଭୂମିରେ ସାଷ୍ଟାଙ୍ଗ ପ୍ରଣାମ କଲେ ।

ବିଦ୍ୟାପତି ଜଗନ୍ନାଥଙ୍କ ପ୍ରତ୍ୟକ୍ଷ ଦର୍ଶନରେ ନିଷ୍ପାପ ହୋଇଥିଲେ । ସେ ନୀଳମାଧବଙ୍କୁ ଧ୍ୟାନ କରି ଏହି ମାଳା ରାଜାଙ୍କୁ ପ୍ରଦାନ କଲେ ଏବଂ ନୀଳାଚଳବାସୀ ଜଗନ୍ନାଥଦେବ ଆପଣଙ୍କୁ ଆଶୀର୍ବାଦ କରନ୍ତୁ ବୋଲି କହି ମହାରାଜାଙ୍କ ଗଳଦେଶରେ ମାଳାକୁ ପିନ୍ଧାଇ ଦେଲେ । ମହାରାଜ ଆନନ୍ଦାଶ୍ରୁରେ ପରିତୃପ୍ତ ହୋଇ ଚକ୍ଷୁ ବୁଜି ଜଗନ୍ନାଥଦେବଙ୍କୁ ସ୍ତବ କରି ଗୃହସ୍ଥ, ବ୍ରହ୍ମଚାରୀ, ଯତି ଓ ବୈଖାନସ ମାନଙ୍କ ଦ୍ୱାରା ପରିବେଷ୍ଟିତ ହୋଇ ସିଂହାସନରେ ଉପବିଷ୍ଟ ହେଲେ । ସେ ସମୟରେ ମହାରାଜାଙ୍କ ନିକଟରେ ଅଷ୍ଟାଦଶ ବିଦ୍ୟାରେ ପାରଦର୍ଶୀ, ଯାଜ୍ଞିକ, ବ୍ରାହ୍ମଣ, ମୁନି ଏବଂ ମନ୍ତ୍ରୀ, ବୃଦ୍ଧ ଓ ଭୃତ୍ୟ ପ୍ରଭୃତି ବହୁଲୋକ ଉପସ୍ଥିତ ଥିଲେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ଅତି ସମ୍ମାନସହ ବିଦ୍ୟାପତିଙ୍କୁ ନିଜ ସିଂହାସନର ସମ୍ମୁଖବର୍ତ୍ତୀ ପୀଠରେ ଉପବେଶନ କରାଇ କୁଶଳବାର୍ତ୍ତା ପଚାରିଲେ ଏବଂ ପୁରୁଷୋତ୍ତମକ୍ଷେତ୍ରର ତଥା ବିଷ୍ଣୁଙ୍କ ମଣିମୟ ମୂର୍ତ୍ତିର ମହିମା ଓ ସ୍ୱରୂପ ଜାଣିବା ପାଇଁ ଆଗ୍ରହ ପ୍ରକାଶ କଲେ । ବିଦ୍ୟାପତି ଯାହା ଦେଖିଥିଲେ ଏବଂ ବୁଝିଥିଲେ, ତାହା ସବିଶଦ ବର୍ଣ୍ଣନା କଲେ । ନୀଳ ପର୍ବତକୁ ଆରୋହଣ କରିବା, ନୀଳମାଧବଙ୍କୁ ଦର୍ଶନ କରିବା, ରୋହିଣୀକୁଣ୍ଡରେ ସ୍ନାନ କରିବା କଥା ଏବଂ ତାହା ସଙ୍ଗେ ସଙ୍ଗେ ଅକ୍ଷୟ ବଟର ମହିମା, ନୃସିଂହଦେବ ତଥା ଅଷ୍ଟଶକ୍ତି ସହ ଅଷ୍ଟଶମ୍ଭୁଙ୍କ କଥା ଏବଂ ରଥାରୂଢ଼ ହୋଇ ସେହି ମହାକ୍ଷେତ୍ରର ଚତୁର୍ଦ୍ଦିଗ ପରି ଭ୍ରମଣ କରିଥିବା, ସେଠାରେ ସମୁଦ୍ରରେ ସ୍ନାନ କରିଥିବା ଇତ୍ୟାଦି ବିଷୟ ମହାରାଜାଙ୍କ ନିକଟରେ ବର୍ଣ୍ଣନା କଲେ । ମହାରାଜ ପୂର୍ବେ ତୀର୍ଥପାନ୍ଥୀ-ମାନଙ୍କଠାରୁ ଯାହା ଶୁଣିଥିଲେ, ତାହା ବିଦ୍ୟାପତିଙ୍କଠାରୁ ମଧ୍ୟ ଶ୍ରବଣ କରି ପ୍ରଭୁଙ୍କ ବିଚହ ବ୍ୟାପାର ସମ୍ବନ୍ଧରେ ତାଙ୍କର ବିଶ୍ୱାସ ଜାତ ହେଲା । ବିଦ୍ୟାପତି ପୁନର୍ବାର କହିଲେ, "ନୀଳମାଧବଙ୍କ ଦିବ୍ୟମୂର୍ତ୍ତି ଚର୍ମଚକ୍ଷୁ • ଦ୍ୱାରା ଦର୍ଶନ କଲେ ମୁକ୍ତି ଲାଭ ହୁଏ । ନୀଳମାଧବଙ୍କ ମୂର୍ତ୍ତି ନୀଳେନ୍ଦ୍ର ମଣିଦ୍ୱାରା ନିର୍ମିତ ଓ ଅତି ପ୍ରାଚୀନ ଅଟେ । ବ୍ରହ୍ମାଦି ଦେବତା ପ୍ରତିଦିନ ତାଙ୍କୁ ପୂଜା କରୁଅଛନ୍ତି । ଦେବତାମାନେ ଏହି ମାଳା ପୂଜା ସମୟରେ ନୀଳମାଧବଙ୍କୁ ଅର୍ପଣ କରିଥିଲେ । ତେଣୁ ଏହା ମ୍ଳାନ ବା ଗନ୍ଧହୀନ ହେବ ନାହିଁ । ଅନେକ ଦିନ ହେଲା ତାହାର ସୌରଭ ଓ ସୌନ୍ଦର୍ଯ୍ୟର କିଛିମାତ୍ର ହ୍ରାସ ହୋଇ ନାହିଁ । ହେ ମହାରାଜ ! ସେ ପ୍ରଭୁଙ୍କର ଦିବ୍ୟ ନିର୍ମାଲ୍ୟ ସେବା କରି

ମୁଁ ନିଶ୍ଚିତ ହୋଇ ମାନବାଞ୍ଛିତ ତେଜ ଲାଭ କରିଅଛି । ଏହା ସେବା କଲେ ବଳକ୍ଷୟ, କ୍ଷୁଧା ଓ ପିପାସାରେ କେହି ଆକ୍ରାନ୍ତ ହୁଅନ୍ତି ନାହିଁ । ଏହି ନିର୍ମାଲ୍ୟ ମୋକ୍ଷ ପ୍ରଦାନ କରିଥାଏ । ଜରା, ରୋଗ, ଶୋକ ପ୍ରଭୃତି ସକଳ କ୍ଲେଶ ଏହି ନିର୍ମାଲ୍ୟ ସେବନ ଦ୍ୱାରା ବିନଷ୍ଟ ହୁଏ । ଯେଉଁ କ୍ଷେତ୍ରରେ ସାକ୍ଷାତ୍ ଜଗନ୍ନାଥ ପ୍ରସନ୍ନବଦନରେ ଶରଣାଗତ ଲୋକଙ୍କୁ ମୁକ୍ତିଦେବା ପାଇଁ ବିରାଜିତ ଅଛନ୍ତି; ତାହାର ମହିମା ଅକଥନୀୟ । ମୁଁ ନୀଳାଚଳରେ ଉପସ୍ଥିତ ହୋଇ ଦେଖିଲି, ସନ୍ଧ୍ୟା କାଳରେ ସେଠାରେ ସୁଶୀତଳ ପବନ ବହୁଅଛି । "ଯାହି, ପ୍ରଯାହି" ଏହି ଧ୍ୱନି ଆକାଶପଥରୁ ମୋତେ ଶୁଣାଗଲା । ସେ ସମୟରେ ଦେବତାମାନେ ଆକାଶରୁ ପୁଷ୍ପବୃଷ୍ଟି କରି ନୀଳାଚଳକୁ ଆଚ୍ଛାଦିତ କଲେ ଏବଂ କ୍ରମେ କ୍ରମେ ପ୍ରଭୁଙ୍କ ନିକଟରେ ଉପସ୍ଥିତ ହେଲେ । ସେଠାରେ ସ୍ୱର୍ଗୀୟ ସଙ୍ଗୀତ ଗାନ ସଙ୍ଗେ ସଙ୍ଗେ ବେଣୁ ବୀଣା ମୃଦଙ୍ଗ ପ୍ରଭୃତି ବାଦ୍ୟଶବ୍ଦ ଶୁଣାଗଲା । ସେହି ଅପୂର୍ବ ଗୀତବାଦ୍ୟ ମୁଁ ପୂର୍ବେ ଶୁଣି ନ ଥିଲି । ଦେବତାମାନେ ପ୍ରଭୁଙ୍କ ପ୍ରୀତି ନିମିତ୍ତ ନାନାବିଧ ଉପହାର ପ୍ରଦାନ କଲେ । ପରେ ପ୍ରଭୁ ଜଗନ୍ନାଥଙ୍କୁ ଯଥାବିଧି ପୂଜା, ଜୟଧ୍ୱନି ଓ ସ୍ତବପାଠଦ୍ୱାରା ସନ୍ତୁଷ୍ଟ କରି ସ୍ୱର୍ଗଧାମକୁ ଫେରିଗଲେ । ତାହାଙ୍କ ଫେରିଯିବା ପରେ ମୋର ବନ୍ଧୁ ଶବରରାଜା ବିଶ୍ୱାବସୁ ମୋତେ ସ୍ୱର୍ଗୀୟ ଭୋଜ୍ୟ ସାମଗ୍ରୀ ଓ ଏହି ମାଳା ଉପହାର ଦେଇଥିଲେ । ଏହି ମାଳା କଦାପି ମଳିନ ହେବ ନାହିଁ । ଏହି ମାଳା ଅଲକ୍ଷ୍ମୀ ଓ ପାପରାଶିକୁ ନିପାତ କରେ । ସ୍ୱୟଂ ଭଗବାନ ବିଷ୍ଣୁ ଯେଉଁ ମନୋହର କ୍ଷେତ୍ରରେ ବାସ କରୁଅଛନ୍ତି, ତାହାର ପରିଚୟ ଶ୍ରବଣ କରନ୍ତୁ । ସେହି ପୁରୁଷୋତ୍ତମକ୍ଷେତ୍ରର ଶୋଭା ଅତି ଅପୂର୍ବ ଓ ବର୍ଣ୍ଣନାତୀତ । ମୁଁ ଭାଗ୍ୟବଳରୁ ଏହା ଦେଖିବାକୁ ସମର୍ଥ ହୋଇଅଛି । ଏହି କ୍ଷେତ୍ରର ଚତୁର୍ଦ୍ଦିଗରେ ଗହନ କାନନ । ତାହା ମଧ୍ୟରେ ନୀଳଗିରି ସେହି କ୍ଷେତ୍ରର ନାଭିପଦ୍ମ ରୂପେ ଶୋଭା ପାଉଅଛି । ଏହି କ୍ଷେତ୍ରର ଦୈର୍ଘ୍ୟ ଓ ବିସ୍ତାର ପଞ୍ଚକ୍ରୋଶ ବର୍ଗପରିମିତ । ଏହାର ପାର୍ଶ୍ୱବର୍ତ୍ତୀ ସମୁଦ୍ରତଟ ସ୍ୱର୍ଣ୍ଣ ବାଲୁକାରେ ପରିପୂର୍ଣ୍ଣ ।"

---

# ଅକ୍ଷୟବଟ, ରୋହିଣୀକୁଣ୍ଡ ଓ ନୀଳମାଧବଙ୍କ ବିଷୟ ବର୍ଣ୍ଣନ

'ନୀଳଗିରିର ଶୃଙ୍ଗରେ ଆକଳ୍ପସ୍ଥାୟୀ ଏକ ବଟବୃକ୍ଷ ଅଛି । ଏ ବୃକ୍ଷ ଏକକ୍ରୋଶବ୍ୟାପୀ । ମାତ୍ର ତହିଁରେ ପୁଷ୍ପ ଫଳ କିଛି ନାହିଁ । କେବଳ ବହୁ ପତ୍ରଦ୍ୱାରା ପରିପୂର୍ଣ୍ଣ ହେତୁ ଅତି ମନୋହର ଦିଶୁଅଛି । ସୂର୍ଯ୍ୟଦେବଙ୍କ ଗତିବିଧି ଅନୁସାରେ ତାହାର ଛାୟାର ପରିବର୍ତ୍ତନ ବୋଧହୁଏ ନାହିଁ । ଏହି ବୃକ୍ଷର ପଶ୍ଚିମଭାଗରେ ରୋହିଣୀ ନାମକ ଗୋଟିଏ କୁଣ୍ଡ ଅଛି । କୁଣ୍ଡତଳକୁ ଓହ୍ଲାଇବା ପାଇଁ ନୀଳକାନ୍ତ-ମଣି ନିର୍ମିତ ସୋପାନମାନ ଅଛି । ଏହି ସୋପାନ କୁଣ୍ଡର ତଳଭାଗ ପର୍ଯ୍ୟନ୍ତ ଅଛି । କୁଣ୍ଡର ଚତୁର୍ଦ୍ଦିଗରେ ସ୍ଫଟିକ ମଣିମୟ ବେଦୀ ଅଛି । ଏହି କୁଣ୍ଡ ଅତୀବ ପବିତ୍ର ଜଳ ଦ୍ୱାରା ପରିପୂର୍ଣ୍ଣ । ଏହି କୁଣ୍ଡରେ ପଡ଼ିଥିବା ବଟଛାୟା ଅତି ସୁଶୀତଳ । ପୂର୍ବଦିଗରେ ବେଦୀର ମଧ୍ୟଭାଗରେ ଶଙ୍ଖଚକ୍ର-ଗଦାପଦ୍ମଧାରୀ ପ୍ରଭୁ ବିରାଜିତ ଅଛନ୍ତି । ତାଙ୍କର ମୂର୍ତ୍ତି ଇନ୍ଦ୍ରନୀଳ-ମଣିନିର୍ମିତ । ମୂର୍ତ୍ତିର ଉଚ୍ଚତାର ପରିମାଣ ଏକାଅଶୀ (୮୧) ଅଙ୍ଗୁଳ । ଏହି ମୂର୍ତ୍ତି ସ୍ୱର୍ଣ୍ଣପଦ୍ମ ଉପରେ ଅବସ୍ଥିତ ଅଛନ୍ତି । ତାହାଙ୍କ ଲଲାଟ, ନୟନଯୁଗଳ ଓ ସୁଧାମୟ ମୁଖ ଦର୍ଶନ କଲେ ଚିତ୍ତ ପରି ଶାନ୍ତ ହୁଏ । ଏହି ଇନ୍ଦ୍ରନୀଳମଣି ମୂର୍ତ୍ତି ମାଧବଙ୍କ ନାସିକାଦ୍ୱୟ ତିଳଫୁଲ ପରି ସୁଶୋଭିତ । ତାଙ୍କ ଶରୀର ପାଷାଣନିର୍ମିତ ହେଲେ ସୁଦ୍ଧା ଅଧର ହାସ୍ୟମୟ; ଗଣ୍ଡଯୁଗଳ ହର୍ଷୋତ୍ଫୁଲ୍ଲ, ଚିବୁକ ଅତୀବ ମନୋହର, ଓଷ୍ଠର ଦୁଇପ୍ରାନ୍ତ ଭାଗର ଗଠନ ଅପୂର୍ବ ଏବଂ ଗଣ୍ଡଦ୍ୱୟର ନିମ୍ନଭାଗ ହାସ୍ୟୋଦ୍ଦୀପକରୂପେ ଶୋଭା ପାଉଅଛି । ତାହାଙ୍କର କର୍ଣ୍ଣଯୁଗଳ ମକରକୁଣ୍ଡଳ ଦ୍ୱାରା ସୁଶୋଭିତ । କଣ୍ଠଦେଶ ଅତ୍ୟନ୍ତ ମନୋହର ଓ ଭୂଷଣରେ ପରିପୂର୍ଣ୍ଣ । ସେ ଏକ ହସ୍ତରେ ମନୋହର ଦକ୍ଷିଣାବର୍ତ୍ତ ଶଙ୍ଖ ଧରି ଅଛନ୍ତି । ତାହାଙ୍କ ଚାରିବାହୁ ଆଜାନୁଲମ୍ବିତ, ସ୍କନ୍ଧଯୁଗଳ ଉଚ୍ଚ ଓ ବିସ୍ତୃତ । ବକ୍ଷସ୍ଥଳରେ ମନୋହର ସୁନିର୍ମଳ ହାର । ଗଳାରେ ଦିବ୍ୟ କୌସ୍ତୁଭମଣି । ସେଥିରେ ଚତୁର୍ଦ୍ଦିଶ ଜଗତର ମୂର୍ତ୍ତି ପ୍ରତିବିମ୍ବିତ ହେଉଥିବା ଦେଖାଯାଏ । ତାହାଙ୍କ ଶରୀର ନାଭିହ୍ରଦରେ ସୂକ୍ଷ୍ମ ରୋମାବଳୀ ସୁଶୋଭିତ । କଣ୍ଠାଲମ୍ବିତ ହାର ତ୍ରିବଳୀର ମଧ୍ୟଭାଗ ପର୍ଯ୍ୟନ୍ତ ସ୍ପର୍ଶ କରୁଅଛି । ପ୍ରଭୁ ଜଗନ୍ନାଥ ଦେବ ସ୍ଥାଣୁପରି ଅଚଳଭାବରେ ବିରାଜିତ ଅଛନ୍ତି । ପୀତବସନ

ପରିଧାନ କରିଅଛନ୍ତି ଓ ମୁକ୍ତାମାଳା ଜଘନ ପର୍ଯ୍ୟନ୍ତ ଲମ୍ବିତ ହୋଇଅଛି । ମନୋହର ଜାନୁଯୁଗଳ ସ୍ତମ୍ଭପରି ସୁଶୋଭନ ହୋଇଅଛି । ଏହା ମୋକ୍ଷଦ୍ୱାରର ମଙ୍ଗଳ ତୋରଣ ପରି ପ୍ରତୀୟମାନ ହେଉଅଛି । ପ୍ରଭୁଙ୍କ ଚରଣଦ୍ୱୟ ଆନୁପୂର୍ବିକଭାବରେ ଗୋଲାକାର । ଜାନୁଯୁଗଳଠାରୁ ପାଦପର୍ଯ୍ୟନ୍ତ ଲମ୍ବିତ ମାଳାରେ ଓ ରତ୍ନବଳୟ ଦ୍ୱାରା ଅଦ୍ଭୁତ ଶୋଭା-ଧାରଣ କରିଅଛି । ହାର, କେୟୂର, କଙ୍କଣ, ମୁକୁଟ ପ୍ରଭୃତି ଆଭରଣରେ ଗାତ୍ର ଶୋଭିତ ହେଉଅଛି । ଜ୍ଞାନ, ଅହଙ୍କାର, ଐଶ୍ୱର୍ଯ୍ୟ ଓ ଶବ୍ଦବ୍ରହ୍ମ ଅର୍ଥାତ୍ ( ବେଦବାଣୀ ) ଏମାନଙ୍କ ସୂକ୍ଷ୍ମରୂପ, ସ୍ଥୂଳରୂପରେ ପରିଣତ ହୋଇଥିବା ଶଙ୍ଖ, ଚକ୍ର, ଗଦା ଓ ପଦ୍ମକୁ ଚତୁଃହସ୍ତରେ ଧାରଣ କରିଅଛନ୍ତି । ଏହି ପ୍ରକାରରେ ଚତୁର୍ଦ୍ଦିଗ ଆଲୋକିତ କରି ପ୍ରଭୁ ନୀଳାଚଳର ଶିଖରରେ ବିରାଜିତ ଅଛନ୍ତି । ତାହାଙ୍କୁ ଦର୍ଶନ କରି ଭକ୍ତି ପୂର୍ବକ ପ୍ରଣାମ କଲେ, ଜୀବ ଦେହବନ୍ଧନରୁ ମୁକ୍ତ ହୁଏ । ପ୍ରଭୁଙ୍କ ବାମପାର୍ଶ୍ୱରେ ଲକ୍ଷ୍ମୀଦେବୀ ପଦ୍ମହସ୍ତରେ ପ୍ରଭୁଙ୍କୁ ଆଲିଙ୍ଗନ କରିଅଛନ୍ତି । ନିଖିଳ ଲାବଣ୍ୟର ଆଧାର ମହାଲକ୍ଷ୍ମୀ ଅଶେଷ ଅଳଙ୍କାରରେ ଭୂଷିତ ହୋଇ ପ୍ରଭୁଙ୍କ ମୁଖାରବିନ୍ଦ ପ୍ରତି ଚକ୍ଷୁପାତ ସହ ବୀଣା ବାଦନ କରୁଅଛନ୍ତି । ଜଗତର ମାତାପିତା ପ୍ରଭୁ ଜଗନ୍ନାଥ ଓ ଲକ୍ଷ୍ମୀଦେବୀ ସେହି ନୀଳାଚଳଧାମରେ ରହି ସହାସ୍ୟମୁଖରେ ଦର୍ଶକମାନଙ୍କୁ ଅନୁଗୃହୀତ କରୁଥିବା ପରି ଦେଖିଲି । ତାହାଙ୍କ ପଶ୍ଚାତ୍ ଭାଗରେ ଅନନ୍ତ ନାଗ ନିଜ ଫଣାସମୂହ ଦ୍ୱାରା ଛତ୍ରାକାର ପରି ରହିଅଛନ୍ତି । ଭଗବାନଙ୍କ ସମ୍ମୁଖରେ ଭକ୍ତ ଗରୁଡ଼ କୃତାଞ୍ଜଳିପୁଟରେ ଦଣ୍ଡାୟମାନ ଅଛନ୍ତି ।

ପ୍ରଭୁଙ୍କୁ ଦର୍ଶନ କଲେ ଦର୍ଶକମାନଙ୍କ ମନ ସେହି ଦିଗକୁ ଆକୃଷ୍ଟ ହୋଇ ରହିଥାଏ । ଯେଉଁ ବ୍ୟକ୍ତି ଜନ୍ମାବଧି ନିଜ ସତ୍କର୍ମର ବହୁ ସହସ୍ର ପୁଣ୍ୟ ସଞ୍ଚୟ କରିଥାଏ, ତାହାର ପରିଣାମର ଫଳ ଏକା-କାରରେ ଲବ୍ଧ କଲାପରି ନୀଳମାଧବଙ୍କ ଦର୍ଶନରୁ ମିଳେ । ଯେଉଁମାନେ ସେହି ନିର୍ମଳ ଆକାଶ ପରି ପୁରୁଷୋତ୍ତମକ୍ଷେତ୍ରସ୍ଥ ନୀଳମୂର୍ତ୍ତି ବିଷ୍ଣୁଙ୍କୁ ଧ୍ୟାନ କରନ୍ତି, ସେମାନେ ସଂସାରବନ୍ଧନରୁ ମୁକ୍ତ ହୋଇ ବିଷ୍ଣୁପୁରରେ ଶୋକଶୂନ୍ୟ ହୋଇ ଅବସ୍ଥାନ କରନ୍ତି । ମହାରାଜ ! ଆଉ ଅଧିକ କହିବି କଣ ? ଶ୍ରୀକ୍ଷେତ୍ରର ମହିମା ଅତି ଅଦ୍ଭୁତ । ଏଠାରେ ପ୍ରଭୁ ମାଧବଙ୍କ ଯେଉଁ ସକଳ ସେବକ ଅଛନ୍ତି, ତାଙ୍କଠାରୁ ମୁଁ ଏ ମହିମା ଅବଗତ ହୋଇଅଛି ଏବଂ ସେଠାର ଲୋକପରମ୍ପରାରୁ ଯେଉଁ

ପୁରାତନ ଓ ପ୍ରସିଦ୍ଧ ଉପାଖ୍ୟାନ ଚଳି ଆସୁଅଛି, ତାହା ଶୁଣିଅଛି । ଆପଣଙ୍କ ଆଜ୍ଞାନୁସାରେ ମୁଁ ସେଠାକୁ ଯାଇ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରି ଆସି ସମସ୍ତ ବିଷୟ ନିବେଦନ କଲି । ସମ୍ପ୍ରତି ଆପଣଙ୍କର ଯାହା ଇଚ୍ଛା, ତାହା ବିବେଚନା କରନ୍ତୁ ।"

## ଇନ୍ଦ୍ରଦ୍ୟୁମ୍ନଙ୍କ ପୁରୁଷୋତ୍ତମ କ୍ଷେତ୍ର ଯାତ୍ରା ଅଭିଳାଷ ଓ ନାରଦଙ୍କ ସହ ଆଲୋଚନା

ଏହା ଶୁଣି ମହାରାଜ ଇନ୍ଦ୍ରଦ୍ୟୁମ୍ନ କହିଲେ, "ଆପଣଙ୍କଠାରୁ ଏପରି ପାପନାଶକାରୀ ସକଳ କଥା ଶ୍ରବଣ କରି ଓ ଦିବ୍ୟ ମାଳା ପାଇ କୃତ୍ୟ କୃତ୍ୟ ହୋଇଅଛି । ମୋର ବହୁ ଜନ୍ମାର୍ଜିତ ପାପରାଶି ବିନଷ୍ଟ ହେଲା । ସମ୍ପ୍ରତି ମୁଁ ଶ୍ରୀପତିଙ୍କ ଦର୍ଶନ କରିବାର ଅଧିକାରୀ ହେଲି । ମୁଁ ସେହି ସ୍ଥାନକୁ ଯାଇ ଦୁର୍ଗ ଓ ପୁରୀ ନିର୍ମାଣ କରି ସେଠାରେ ବାସ କରିବି ଏବଂ ଜଗନ୍ନାଥଙ୍କ ପ୍ରୀତି ପାଇଁ ଅଶ୍ୱମେଧଯଜ୍ଞ ସମ୍ପାଦନ କରି ପ୍ରତ୍ୟହ ପ୍ରଭୁଙ୍କୁ ଶତ ଶତ ଉପଚାର ଦ୍ୱାରା ପୂଜା କରିବି । ଦୀନବନ୍ଧୁ ପ୍ରଭୁ ଭଗବାନ ମୋ ପ୍ରତି ଯେପରି ସନ୍ତୁଷ୍ଟ ହୁଅନ୍ତି, ସେଥିସକାଶେ ମୁଁ ବ୍ରତଉପବାସାଦି କଠିନ ନିୟମମାନ ମଧ୍ୟ ପ୍ରତି ପାଳନ କରିବି ।"

ଏହି ସମୟରେ ଭୁବନ ଦର୍ଶନରେ କୌତୁହଳୀ ନାରଦ ସେହିଠାରେ ଉପଗତ ହେଲେ । ବୈଷ୍ଣବଶ୍ରେଷ୍ଠ ବ୍ରହ୍ମପୁତ୍ର ମହର୍ଷି ନାରଦଙ୍କୁ ସମାଗତ ଦେଖି ମହାରାଜ ଇନ୍ଦ୍ରଦ୍ୟୁମ୍ନ ନିଜ କାର୍ଯ୍ୟସିଦ୍ଧିର ସମ୍ଭାବନା ଆଶା କରି ଆଶ୍ୱସ୍ତ ହେଲେ ଓ ସହସା ଗାତ୍ରୋତ୍ଥାନ କରି ମହର୍ଷି ନାରଦଙ୍କୁ ପାଦ୍ୟଅର୍ଘ୍ୟାଦି ଦ୍ୱାରା ପୂଜା କଲେ । ନାରଦ ଦିବ୍ୟ ଆସନରେ ବିରାଜିତ ହେବାପରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ହାତ ଯୋଡ଼ି କହିଲେ, "ଆଜି ମୋର ସକଳ ଯଜ୍ଞ, ଦାନ, ଅଧ୍ୟୟନ ଓ ତପସ୍ୟା ସଫଳ ହେଲା । ଏଠାକୁ ଆଗମନ କରି ମୋତେ କୃତାର୍ଥ କରି ଅଛନ୍ତି ।"

ବ୍ରହ୍ମପୁତ୍ର ନାରଦ ଈଷତ୍ ହାସ୍ୟରେ କହିଲେ, "ହେ ମହାରାଜ ! ଆପଣଙ୍କର ନିର୍ମଳ ଗୁଣରାଶି ସିଦ୍ଧ, ମୁନି, ଦେବତା ଓ ବ୍ରହ୍ମା ସମସ୍ତଙ୍କୁ ଅତି ସନ୍ତୁଷ୍ଟ କରି ପାରିଅଛି । ଆପଣଙ୍କ ପ୍ରତ୍ୟେକ

ଗୁଣ ସୁପ୍ରତିଷ୍ଠିତ । ସମୁଦାୟ ଗୁଣରାଶି ଏକତ୍ରିତ ହେଲେ ତାର ମହିମା ଅକଥନୀୟ । ଏହା ଦ୍ୱାରା ଲୋକେ ବ୍ରହ୍ମଲୋକରେ ବାସ କରିବାକୁ ସମର୍ଥ ହୁଅନ୍ତି । ମୁଁ ବଦରିକାଶ୍ରମରେ ନରରୂପୀ ନାରାୟଣଙ୍କ ଦର୍ଶନ ପାଇଁ ଅବତୀର୍ଣ୍ଣ ହୋଇଥିଲି । ସେଠାରେ ମୁଁ ଧ୍ୟାନରେ ତୁମ୍ଭର ଏ ସବୁ ଅଧ୍ୟବସାୟ ଅବଗତ ହେଲି । ତୁମ୍ଭର ଚେଷ୍ଟା ଅତି ଉତ୍ତମ । ସହସ୍ର ଜନ୍ମର ଅଭ୍ୟାସ ଦ୍ୱାରା ନୀଳାଚଳସ୍ଥ ବିଶ୍ୱେଶ୍ୱର ମାଧବଙ୍କ ପ୍ରତି ଭକ୍ତି ଜନ୍ମେ । ପିତାମହ ଯାହାଙ୍କୁ ଆରାଧନା କରି ଜଗତର ପ୍ରବୃତ୍ତି ଲାଭ କରି ସୃଷ୍ଟି ନିର୍ମାଣ କଲେ ଓ ପିତାମହ ପଦ ପ୍ରାପ୍ତ ହେଲେ, ଆପଣ ସେହି ବଂଶରୁ ଜନ୍ମଲାଭ କରି ଅଛନ୍ତି । ଭଗବାନ ବିଷ୍ଣୁଙ୍କ ପ୍ରତି ଭକ୍ତି ଜନ୍ମିଲେ ଚତୁର୍ବର୍ଗ ଫଳ ଲାଭ ହୁଏ । ତେଣୁ ଏହା ଅଳ୍ପ ତପସ୍ୟାର ଫଳ ନୁହେଁ ।”

---

## ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ନାରଦଙ୍କ ବିଷ୍ଣୁଭକ୍ତି କଥନ

ଅନାଦି ଅବିଦ୍ୟା, ଅତି ସୁଦୃଢ଼ । ଏହା ପଞ୍ଚକ୍ଲେଶକୁ ବଢ଼ାଇ ଥାଏ । ମାତ୍ର କେବଳ ବିଷ୍ଣୁଭକ୍ତିହିଁ ଅବିଦ୍ୟା ଉଚ୍ଛେଦ କରିବାକୁ ସମର୍ଥ । ସାଧୁମାନେ ବିଷ୍ଣୁଭକ୍ତିକୁ ମାତୃରୂପେ ଆଶ୍ରୟ କରି ସନ୍ତୁଷ୍ଟିରେ ଥାଇ କେବେ ଶୋକପ୍ରାପ୍ତ ହୁଅନ୍ତି ନାହିଁ । ବିଷ୍ଣୁଭକ୍ତିରୂପ ପ୍ରଦୀପ୍ତ ଦାବାଗ୍ନିରେ ଜୀବମାନଙ୍କର କାୟିକ, ବାଚିକ ଓ ମାନସିକ ନିଖିଳ ପାପରାଶି ସଳଭ ପରି ଦଗ୍ଧ ହୋଇଯାଏ । ବିଷ୍ଣୁଭକ୍ତିର ମହିମା ଅତୁଳନୀୟ ଓ ଅନିର୍ବଚନୀୟ ।

ମହର୍ଷି ନାରଦଙ୍କ ମୁଖରୁ ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଭକ୍ତିର ଏହି କଥା ଶ୍ରବଣ କରି କହିଲେ ଯେ, ଆପଣ ଦୟାକରି ବିଷ୍ଣୁଭକ୍ତିର ସ୍ୱରୂପ ବର୍ଣ୍ଣନା କରନ୍ତୁ । ଯେହେତୁ ଆପଣ ହିଁ ଏହା କହିବାକୁ ଏକମାତ୍ର ସମର୍ଥ ଅଟନ୍ତି । ମହର୍ଷି ନାରଦ ସନ୍ତୁଷ୍ଟ ହୋଇ ବିଷ୍ଣୁଭକ୍ତି କଥା ବିସ୍ତୃତଭାବରେ ନିମ୍ନୋକ୍ତ ପ୍ରକାରେ ବର୍ଣ୍ଣନା କରିଥିଲେ ।

ଏହି ଭକ୍ତି ତ୍ରିବିଧ ଏବଂ ସେଥିରୁ ଅତିରିକ୍ତ ଚତୁର୍ଥ ପ୍ରକାର ଅର୍ଥାତ୍ ତୁରୀୟ ଭକ୍ତିକୁ ନିର୍ଗୁଣ ଭକ୍ତି କୁହାଯାଏ । ଯେଉଁମାନେ କାମକ୍ରୋଧାଭିଭୂତ ହୋଇ କେବଳ ଦୃଷ୍ଟ ପଦାର୍ଥକୁ ସ୍ୱୀକାର କରନ୍ତି, ସେମାନଙ୍କର ଭକ୍ତିକୁ ଲୋଭ ଓ ଅହଙ୍କାର ନିମିତ୍ତ ତାମସୀ ଭକ୍ତି.

କୁହାଯାଏ । ବିଶେଷତଃ ଅତ୍ୟଧିକ ଯଶଲାଭ ଆଶା ଅଥବା ଅପରର ଶ୍ରଦ୍ଧା ବା ପ୍ରସଙ୍ଗକ୍ରମରେ ପରଲୋକ ପାଇଁ ଯେଉଁ ଭକ୍ତି କରାହୁଏ, ତାହାକୁ ରାଜସୀ ଭକ୍ତି କହନ୍ତି । ତୃତୀୟତଃ ସମୁଦାୟ ଦୃଷ୍ଟ ପଦାର୍ଥ ବିନାଶଶୀଳ । ଏହା ଯେଉଁ ବ୍ୟକ୍ତି ସ୍ଥିର କରି ନିଜ ନିଜ ବର୍ଣ୍ଣାଶ୍ରମର କଥିତ ଧର୍ମ ପରିତ୍ୟାଗ ନ କରି କେବଳ ଆତ୍ମଜ୍ଞାନ ଲାଭ ପାଇଁ ଭକ୍ତି କରେ, ସେହି ଭକ୍ତି ସାତ୍ତ୍ୱିକ ନାମରେ ଅଭିହିତ । ଏହାହିଁ ତ୍ରିଗୁଣ ଭକ୍ତି । ଚତୁର୍ଥ ( ତୁରୀୟ ନିର୍ଗୁଣ ) ଭକ୍ତି ଏହି ଯେ, ଏହି ଦୃଶ୍ୟମାନ ଜଗତ ହିଁ ଜଗନ୍ନାଥ । ଜଗନ୍ନାଥ ମଧ୍ୟ ମୋ'ଠାରୁ ପୃଥକ ନୁହନ୍ତି । ଏହିପରି ଭାବକୁ ନିର୍ଗୁଣ ଭକ୍ତି ବା ତୁରୀୟ ଭକ୍ତି ବୋଲିଯାଏ । ତେଣୁ ବହିରୁପାଧି, ଅର୍ଥାତ୍ ସ୍ଥୂଳ ଶରୀରାଦି ଏବଂ ସୁଖ ସେବ୍ୟ ଗନ୍ଧମାଲ୍ୟାଦି କେବଳ ପ୍ରୀତିବର୍ଦ୍ଧନ କରେ; ତଦ୍ଦ୍ୱାରା ମୁକ୍ତିଲାଭ ହୁଏ ନାହିଁ । ଏହି ପ୍ରକାର ଜ୍ଞାନରେ ମୋକ୍ଷ ପାଇଁ ଯେଉଁ ଭକ୍ତି ପ୍ରକାଶିତ ହୁଏ, ତାହା ଅଦ୍ୱୈତ ଭକ୍ତି ଓ ତାହା ଅତି ଦୁର୍ଲଭ ଭକ୍ତି ବୋଲି କଥିତ ହୁଏ । ତାମସି ଭକ୍ତି ଦ୍ୱାରା ପିତୃଲୋକ, ରାଜସୀ ଭକ୍ତି ଦ୍ୱାରା ଚନ୍ଦ୍ରଲୋକ ଓ ସାତ୍ତ୍ୱିକ ଭକ୍ତି ଦ୍ୱାରା ବ୍ରହ୍ମଲୋକ ପ୍ରାପ୍ତି ହୁଏ । ମାନବ ପୁଣ୍ୟର ଅବସାନରେ ଏହି ଭୂଲୋକକୁ ପୁନରାଗମନ କରି ପୂର୍ବଜନ୍ମଗତ ଭକ୍ତିସମ୍ପନ୍ନ ତାମସୀ, ରାଜସୀ ଭକ୍ତିସମ୍ପନ୍ନ ସାତ୍ତ୍ୱିକ ଓ ସାତ୍ତ୍ୱିକ ଭକ୍ତିସମ୍ପନ୍ନ ବ୍ୟକ୍ତି ଅଦ୍ୱୈତ ଭାବନା କରି ମୁକ୍ତିଲାଭ କରେ । ତେଣୁ ଯେ କୌଣସି ଏକ ଭକ୍ତିକୁ ଆଶ୍ରୟ କଲେ ମାନବ କ୍ରମଶଃ ମୁକ୍ତିପଥକୁ ଗମନ କରେ । ବିଷ୍ଣୁଭକ୍ତିହୀନ ଲୋକର ବେଦ ସ୍ମୃତି ଭକ୍ତି କ୍ରିୟା, ପ୍ରାୟଶ୍ଚିତାଦି, ତୀର୍ଥଯାତ୍ରା, କୃଚ୍ଛ୍ର ବ୍ରତାଦି-ତପସ୍ୟା-ସତ୍କୁଳ ଜନ୍ମ ଓ ଶିଳ୍ପକର୍ମାଦି କେବଳ ଭୂଷଣ ଅଟେ । ଏହା ଅସତୀ ସ୍ତ୍ରୀର ବ୍ୟଭିଚାର ପରି ଅଟେ ଏବଂ ସେ ସବୁ ତାହାର ଶରୀରର କ୍ଲେଶଦାୟକ ମାତ୍ର । ଯଦି କୁଳାଚାର-ବିହୀନ ଲୋକ ଭଗବାନଙ୍କ ପ୍ରତି ଦୃଢ଼ ଭକ୍ତି ସହ ଜିତେନ୍ଦ୍ରିୟ ହୁଏ, ତାହାହେଲେ ସେ ସକଳ ଲୋକଙ୍କ ମଧ୍ୟରେ ଶ୍ରେଷ୍ଠ । ମାତ୍ର ଭକ୍ତିହୀନ ମନୁଷ୍ୟ ଅଷ୍ଟାଦଶ ବିଦ୍ୟାରେ ବିଶାରଦ, ସଜ୍ଜାତ ଓ ଧାର୍ମିକ ହେଲେ ମଧ୍ୟ ନିନ୍ଦନୀୟ ଅଟେ । ଯେଉଁ ବିଦ୍ୟାବଳରେ ଜଗନ୍ନାଥଙ୍କୁ ବୁଝି ହୁଏ, ତାହା ପ୍ରକୃତ ବିଦ୍ୟା ନାମରେ କଥିତ । ଭକ୍ତି ଓ ବିଦ୍ୟା ଏ ଉଭୟ ପରସ୍ପର ସହିତ ସଂଯୁକ୍ତ । ଦୃଢ଼ବ୍ରତ ମାନବହିଁ ବିଷ୍ଣୁଭକ୍ତ ନାମରେ କଥିତ ହୁଅନ୍ତି । ଏହା କହିବା ବାହୁଲ୍ୟ ଯେ, ତାଦୃଶ ବିଷ୍ଣୁଭକ୍ତ ମାନବ

ସ୍ୱେଚ୍ଛାକ୍ରମେ ସୃଷ୍ଟି, ସ୍ଥିତି, ପ୍ରଳୟ ଘଟାଇ ପାରନ୍ତି । ତାହାଙ୍କ ନିକଟରେ ପୃଥ୍ୱୀର ଆଧିପତ୍ୟ ବା ସ୍ୱର୍ଗାଦି କାମନା ଅତି ନିକୃଷ୍ଟରୂପେ ପରିଗଣିତ ହୁଏ । ହେ ମହାରାଜ ! ବିଷ୍ଣୁଭକ୍ତ ଓ ବିଷ୍ଣୁ ଏକ ଅଟନ୍ତି; ଉଭୟରେ ପୃଥକ୍ କିଛି ନାହିଁ । ବିଷ୍ଣୁଭକ୍ତଙ୍କୁ ସେବାକଲେ ବିଷ୍ଣୁଙ୍କ ସେବା ହୁଏ ।" ଏହିପରି ସବିଶେଷଭାବରେ ଭଗବାନଙ୍କ ମହିମା କୀର୍ତ୍ତନ କରୁ କରୁ ନାରଦଙ୍କ ମନ ଭଗବତ୍ ପ୍ରେମରେ ଆକୁଳ ହେଲା ଓ ସେ ରାଜାଙ୍କୁ କହିଲେ କି, "ହେ ମହାରାଜ ! ଭଗବଦ୍‌ଭକ୍ତ ଲୋକଙ୍କୁ କେବେ କାହାରିଠାରେ ଧନପ୍ରାର୍ଥୀ ହେବାକୁ ପଡ଼େ ନାହିଁ । ତାହାର ଶରୀରରେ କ୍ଲେଶ ନ ଥାଏ । ସେ କେବଳ ଭଗବାନଙ୍କ ନାମ କୀର୍ତ୍ତନ ଓ ଭଜନରେ ମୁଗ୍‌ଧ ହୋଇଥାଏ ।" ଏହା କହି ଓ ଅବୈଷ୍ଣବ ଲୋକଙ୍କ ଦୁଷ୍ଟଶରୀର ବହୁବିଧ ବିଷୟ ବର୍ଣ୍ଣନା କରିଥିଲେ । ତାହା ବାହୁଲ୍ୟ ହେତୁ ଉଲ୍ଲେଖ କରାଗଲା ନାହିଁ ।

---

## ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ପୁରୁଷୋତ୍ତମକ୍ଷେତ୍ର ଯାତ୍ରା

ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କଠାରୁ ଅତି ଉତ୍ତମ ବିଷ୍ଣୁଭକ୍ତ କଥା ଶ୍ରବଣ କରି ଆନନ୍ଦିତ ହେଲେ ଓ ନିବେଦନ କଲେ, "ଆପଣଙ୍କ ସାନ୍ନିଧ୍ୟ ଲାଭ କରି ମୋର ସକଳ ଆନ୍ତରିକ ଅନ୍ଧକାର ବିନଷ୍ଟ ହୋଇଅଛି । ସମ୍ପ୍ରତି ମୋ ଚିତ୍ତ ନୀଳମାଧବ ପ୍ରଭୁଙ୍କ ଅର୍ଚ୍ଚନା କରିବା ପାଇଁ ବ୍ୟଗ୍ର ହେଉଅଛି । ହେ ବ୍ରହ୍ମର୍ଷି ! ଆପଣ ସର୍ବଲୋକ ଭ୍ରମଣ କରି ବ୍ରହ୍ମାଣ୍ଡର ସକଳ ବିଷୟ ଅବଗତ ହୋଇଅଛନ୍ତି । ତେବେ ଆମ୍ଭେ ଦୁହେଁ ରଥାରୋହଣ କରି ପୁରୁଷୋତ୍ତମ କ୍ଷେତ୍ରସ୍ଥ ନୀଳପର୍ବତକୁ ଗମନ କରିବା । ସେଠାରେ ବହୁତୀର୍ଥ ଅଛି, ତାହା ମୁଁ ବହୁ ଲୋକଙ୍କ ମୁଖରୁ ଶୁଣିଅଛି । ସମ୍ପ୍ରତି ସେହି ଶ୍ରବଣ କଥା ଆପଣଙ୍କ ଦୟାରୁ ପ୍ରତ୍ୟକ୍ଷ ଦର୍ଶନ କଲେ ସକଳ କାର୍ଯ୍ୟ ସଫଳ ହେବ ।"

ନାରଦ କହିଲେ, "ଉକ୍ତ କ୍ଷେତ୍ର ଓ କ୍ଷେତ୍ରସ୍ଥିତ ସକଳ ତୀର୍ଥମାନ ତୁମ୍ଭଙ୍କୁ ଦେଖାଇବି । ଭକ୍ତାଧୀନ ଭଗବାନଙ୍କର ତୁମ୍ଭେ ଦର୍ଶନ ପାଇବ । ତୁମ୍ଭଙ୍କୁ ଅନୁଗୃହୀତ କରିବା ଉଦ୍ଦେଶ୍ୟରେ ଲକ୍ଷ୍ମୀପତି ଭଗବାନ ଚତୁର୍ଦ୍ଧା ମୂର୍ତ୍ତିରେ ଅବସ୍ଥିତ ହେବେ । ତାହାଙ୍କୁ ଦେଖିଲେ ମାନବର ମୁକ୍ତିଲାଭ ହୁଏ ।" ଏପରି କଥୋପକଥନ ପରେ ପୁରୁଷୋତ୍ତମକ୍ଷେତ୍ରକୁ ଯାତ୍ରା ପାଇଁ ଜ୍ୟେଷ୍ଠମାସର ଶୁକ୍ଳପଞ୍ଚମୀ ଶୁକ୍ରବାର ପୁଷ୍ୟାନକ୍ଷତ୍ରର ଶୁଭଲଗ୍ନରେ

ଅନୁକୂଳ ସମୟ ସ୍ଥିର କରି ରାଜପାପନ କଲେ ଓ ପରଦିନ ପ୍ରଭାତ କାଳରେ ମହାରାଜା ଘୋଷଣା କଲେ, "ମୁଁ ରାଜ୍ୟବାସୀ ବନ୍ଧୁଗଣ ଓ ସୈନ୍ୟସାମନ୍ତ ସହିତ ନୀଳାଚଳକୁ ଯାଇ ସେଠାରେ ଯାବଜ୍ଜୀବନ ବାସ କରିବି । ତେଣୁ ଯେଉଁମାନେ ମୋ ସହିତ ସେଠାକୁ ଯାଇ ବାସ କରିବାକୁ ଇଚ୍ଛୁକ, ସେମାନେ ଆସନ୍ତୁ । ମୋର ଅନ୍ତଃପୁରର ପରିବାର-ବର୍ଗ ଓ ଧନାଗାର ସହିତ ମୋ ଅମାତ୍ୟ ରାଜପୁରୁଷମାନେ, ହସ୍ତୀ ଅଶ୍ୱ, ରଥ, ପଦାତିକ ଓ ସୈନ୍ୟଗଣଙ୍କ ସହିତ ଗମନ କରନ୍ତୁ । ଅଗ୍ନିହୋତ୍ରୀ, ଅଷ୍ଟାଦଶ ବିଦ୍ୟାବିଶାରଦ ବ୍ରାହ୍ମଣ ପଣ୍ଡିତମାନେ, ଜ୍ୟୋତିର୍ବିଦ,-ଆୟୁର୍ବେଦ-ଚିକିତ୍ସକ, ପଶୁଚିକିତ୍ସକ ଓ ପ୍ରଜାବୃନ୍ଦ ପ୍ରଭୃତି ସମସ୍ତେ ସେଠାକୁ ଯାତ୍ରା କରନ୍ତୁ । ମୋ ରାଜ୍ୟରେ ବାସ କରୁଥିବା ସାହସୀ ବୈରି, ପଣ୍ୟତୋହର (ସ୍ୱର୍ଣ୍ଣକାର), ଓ ନାନାବିଧ ଶିଳ୍ପକାର ପ୍ରଭୃତି ବିଭିନ୍ନ ଶ୍ରେଣୀର ଲୋକ ସେଠାରେ ମଧ୍ୟ ବାସ କରିବାକୁ ଯା'ନ୍ତୁ । ପରେ ଶାସ୍ତ୍ରବିଧି ଅନୁସାରେ ବୃଦ୍ଧି ଶ୍ରାଦ୍ଧାଦି ସହ ଗଣଦେବତାମାନଙ୍କର ଯଥାବିଧି ହୋମ ବଳିଦାନ କରି ଶଙ୍ଖ ଧ୍ୱନିସହ ଯାତ୍ରା କଲେ । ଯାହାର ବିସ୍ତାରିତ ବିବରଣ ଉତ୍କଳ ଖଣ୍ଡରେ ଉଲ୍ଲେଖ ଅଛି । ତାହାର ସାରାଂଶ ଏହି ଯେ, ଆୟୁଷ୍କର ମନ୍ତ୍ର ଅର୍ଥାତ ଗମନୀୟ ପଥର ବିଘ୍ନବିନାଶକ ମନ୍ତ୍ର ଓ ପଥିସୂକ୍ତ ମନ୍ତ୍ରମାନଙ୍କ ଦ୍ୱାରା ନିଜେ ଅଭିରକ୍ଷିତ ହୋଇ ଲକ୍ଷ୍ମୀନାରାୟଣଙ୍କୁ ହୃଦପଦ୍ମରେ ଧ୍ୟାନ କରି ଦକ୍ଷିଣପାଦ ପ୍ରଥମେ ନିକ୍ଷେପ କରାଯାଏ । ଏପରି ଭାବରେ ଅଗ୍ରଭାଗରେ ନାରଦ ଓ ତାଙ୍କର ପଶ୍ଚାଦ୍‌ଭାଗରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ନୃସିଂହ ମନ୍ଦିରରେ ପ୍ରବେଶ କଲେ । ନୃସିଂହଙ୍କୁ ଏବଂ ତାଙ୍କ ଦକ୍ଷିଣ ପାର୍ଶ୍ୱରେ ବିରାଜିତ ଦୁର୍ଗତିହାରିଣୀ ଭଗବତୀ ଦୁର୍ଗାଦେବୀଙ୍କୁ ଦର୍ଶନ ଓ ସ୍ତବ କରି ନୃସିଂହ ଓ ଦୁର୍ଗାଦେବୀଙ୍କୁ ଶିବିକାରେ ଆରୋହଣ କରାଇ ଦେବତାଙ୍କର ପଶ୍ଚାଦ୍‌ଗାମୀ ହେଲେ । ନଗରର ବହିର୍ଭାଗରେ ଉପସ୍ଥିତ ଥିବା ବାୟୁଭୁଲ୍ୟ ଗତିଶୀଳ ଦଶ ଅଶ୍ୱଯୁକ୍ତ ସୁସଜ୍ଜିତ ରଥକୁ ଇନ୍ଦ୍ରଦ୍ୟୁମ୍ନ ପ୍ରଦକ୍ଷିଣ କରି ନାରଦଙ୍କ ସହିତ ରଥାରୂଢ଼ ହେଲେ । ନାନାବିଧ ବାଦ୍ୟ ବାଜିଲା । ରାଜାଙ୍କର ରଥର ଚତୁଃପାର୍ଶ୍ୱରେ ରାଜାଶ୍ରିତ ଲୋକେ ଧାଡ଼ି ଧାଡ଼ି ହୋଇ ଶୋଭା ବଢ଼ାଇଲେ । ତତ୍‌କାଳରେ ଅନ୍ତଃପୁରବାସୀଙ୍କ ସହିତ ଅମାତ୍ୟଗଣ, ସାମନ୍ତ ରାଜାଗଣ ତଥା ପୁରୋହିତ, ମନ୍ତ୍ରୀ ଓ କୋଷାଧ୍ୟକ୍ଷ ପ୍ରଭୃତି ସମସ୍ତେ ଯଥାବିହିତ ଯାନରେ ଉପବେଶନ କରି ଶ୍ରେଣୀବଦ୍ଧ ହୋଇ ଯାତ୍ରାକଲେ ।

ଯେଉଁମାନେ ଦେଶମାନଙ୍କର ଯାତାୟାତ ପଥ ଜାଣନ୍ତି ଏବଂ କେଉଁଠାରେ ଅରଣ୍ୟ ଅଛି ଓ କେଉଁ ବାଟରେ ଗଲେ କେଉଁ ସ୍ଥାନରେ ଉପସ୍ଥିତ ହେବାକୁ ହେବ, ଏପରି ଅଭିଜ୍ଞ ଲୋକମାନେ ମହାରାଜାଙ୍କୁ ବାଟ ଦେଖାଇ ଦେଖାଇ ଚାଲିଲେ । ମେଘଚ୍ଛାୟାରେ ଆବୃତ ଏବଂ ଧୂଳିଶୂନ୍ୟ ସମତଳ ମାର୍ଗରେ ସୁଶୀତଳ ଅନୁକୂଳ ପବନ ସେବନ କରି ସମସ୍ତେ ପ୍ରସନ୍ନ ମନରେ ଯାତ୍ରା କଲେ । ପଥମଧ୍ୟରେ ନାନା ଦେଶ ଓ ବନ ପର୍ବତ ଦେଖି ଦେଖି ଆନନ୍ଦିତ ହେଲେ । ଅରଣ୍ୟ ମଧ୍ୟରେ ଉତ୍କଳଦେଶର ସୀମାପ୍ରକାଶିକା ମୁଣ୍ଡମାଳାଭୂଷିତା ଚଣ୍ଡିକାଦେବୀଙ୍କୁ ଦର୍ଶନ କଲେ । ନାରଦଙ୍କ ଅନୁମତିକ୍ରମେ ଇନ୍ଦ୍ରଦ୍ୟୁମ୍ନ ଚଣ୍ଡିକା ଦେବୀଙ୍କୁ ସାଷ୍ଟାଙ୍ଗ ପ୍ରଣାମ ପୂର୍ବକ ପ୍ରାର୍ଥନା କଲେ କି, ନୀଳାଚଳବାସୀ ଦେବଦେବଙ୍କୁ ମୋର ନିଜ ଚକ୍ଷୁରେ ଦର୍ଶନ କରିବା ଅଭିଳାଷ ପୂର୍ଣ୍ଣହେଉ । ତତ୍ପରେ ସେଠାରୁ ଆସି ଚିତ୍ରୋତ୍ପଳା ମହାନଦୀ ତଟରେ ଧାତୁକନ୍ଦର ନାମକ ବିଖ୍ୟାତ ଅରଣ୍ୟ ମଧ୍ୟରେ ଉପସ୍ଥିତ ହେଲେ । ସେଠାରେ ମହାରାଜ ପୁରୋହିତଙ୍କ ସହିତ ଅପରାହ୍ଣ ବିହିତ ଆହ୍ନିକ କୃତ୍ୟ ସମାପନ କରି ବିଷ୍ଣୁଙ୍କ ଅର୍ଚ୍ଚନା କଲେ । ତତ୍ପରେ ଅନ୍ତଃପୁରକୁ ଯାଇ ଅମୃତ ତୁଲ୍ୟ ଭୋଜ୍ୟଦ୍ରବ୍ୟ ଭୋଜନ କଲେ । ରାତିରେ ସଭ୍ୟବୃନ୍ଦ, ନୃତ୍ୟକାରୀ ଓ ସ୍ତୁତିପାଠକବୃନ୍ଦ ସଭାରେ ଉପସ୍ଥିତ ହୁଅନ୍ତେ ଇନ୍ଦ୍ରଦ୍ୟୁମ୍ନ ସିଂହାସନରେ ବସି ସର୍ବବେଦବେଦାନ୍ତ ପାରଦର୍ଶୀ ଓ ଭଗବଦ୍ ପ୍ରିୟ ନାରଦଙ୍କୁ ହରିଙ୍କ ଚରିତ ବର୍ଣ୍ଣନା କରିବାକୁ ପ୍ରାର୍ଥନା କଲେ ।

---

## ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ପାଶରେ ଉତ୍କଳାଧିପତିଙ୍କ ପ୍ରବେଶ

ନାରଦ ହରିଚରିତ ବୁଝାଉଥିବା ସମୟରେ ଉତ୍କଳ ଦେଶାଧିପତି ତାଙ୍କ ମନ୍ତ୍ରୀଙ୍କ ସହିତ ସଭାସ୍ଥଳରେ ଉପସ୍ଥିତ ହେଲେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ତାଙ୍କ ପାଦପ୍ରଣତ ଉତ୍କଳାଧିପତିଙ୍କୁ ଯଥାଯୋଗ୍ୟ ସମ୍ମାନ ସହ ନିଜ ପାର୍ଶ୍ୱରେ ବସାଇ ସାଦରେ ତାଙ୍କ କୁଶଳ ଜାଣିବା ପାଇଁ ପ୍ରଶ୍ନ କଲେ । ଆପଣଙ୍କ କୃପାରୁ ସବୁ କୁଶଳ ବୋଲି ଉତ୍କଳାଧିପତି ଉତ୍ତର ଦେଲେ । ପୁନଶ୍ଚ କହିଲେ କି, "ଆପଣଙ୍କର ଏହି ପୃଥ୍ୱୀଶାସନ କାଳରେ ଧର୍ମ ଚତୁଷ୍ପାଦ ହୋଇ ରହିଅଛି ଏବଂ ଆପଣଙ୍କ ପ୍ରତାପରେ

ଗ୍ରୈଦର୍ଯ୍ୟାଦ ନଷେଧ କାର୍ଯ୍ୟ ଦେଖିବାକୁ ମିଳେ ନାହିଁ; କେବଳ ଶୁଣିବାକୁ ମିଳେ । ଅଷ୍ଟାଦଶ ଦ୍ୱୀପ ସହିତ ସମସ୍ତ ପୃଥିବୀ ଗୋଟିଏ ଗୃହପରି ଆପଣଙ୍କଦ୍ୱାରା ଶାସିତ ହେଉଅଛି । ଆପଣ ଗୁଣବାନ୍ ଓ ଧାର୍ମିକ । ବ୍ରହ୍ମା ଆପଣଙ୍କ ସଦୃଶ ବ୍ୟକ୍ତିଙ୍କୁ ଯେବେ ସୃଜନ କରି ନ ଥାନ୍ତେ, ତେବେ ଲୋକେ ବନ୍ଧୁବର୍ଗଙ୍କ ବିଚ୍ଛେଦରେ ମଧ୍ୟ ବୀତଶୋକ ହୋଇ ପାରନ୍ତେ ନାହିଁ । ସାଧାରଣ ରାଜାମାନେ ବିଷ୍ଣୁଙ୍କ ଅଂଶ ବୋଲି ପ୍ରବାଦ ଅଛି । ଆପଣ ସାକ୍ଷାତ୍ ଭଗବାନ ଏବଂ ଆପଣଙ୍କ ସଦୃଶ ସର୍ବ-ଗୁଣାକର ରାଜା କେହି ନାହାଁନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ଆପଣ ଯେଉଁ ସ୍ଥାନକୁ ଯାତ୍ରା କରୁଅଛନ୍ତି, ତାହା ନୀଳପର୍ବତର ଦକ୍ଷିଣ ଦିଗକୁ ମହୋଦଧି ତଟରେ ଅବସ୍ଥିତ ଏବଂ ସେଠାକୁ ଯିବାକୁ କୌଣସି ଲୋକର ଶକ୍ତି ନାହିଁ । ଦେବତାମାନେ ମଧ୍ୟ ସର୍ବଦା ଯାତାୟାତ କରିବାକୁ ଅସମର୍ଥ । ସମ୍ପ୍ରତି ଶୁଣିଅଛି ଯେ, ପ୍ରଚଣ୍ଡ ବାୟୁର ବେଗରେ ବାଲୁକାରାଶି ଆସି ପର୍ବତ ଆଚ୍ଛାଦିତ କରିଅଛି ଏବଂ ସେହି ହେତୁରୁ ଏହି ରାଜ୍ୟରେ ଦୁର୍ଭିକ୍ଷ ଓ ମଡ଼କ ପୀଡ଼ା ଉପସ୍ଥିତ ହୋଇଅଛି ।" ଏହା ଶୁଣି ଇନ୍ଦ୍ରଦ୍ୟୁମ୍ନ ଅତ୍ୟନ୍ତ ବ୍ୟାକୁଳ ହୋଇ ନାରଦଙ୍କୁ ଦୁର୍ଘଟଣା ବିଷୟ ପଚାରିଲେ ।

## ଇନ୍ଦ୍ରଦ୍ୟୁମ୍ନଙ୍କୁ ନାରଦଙ୍କ ଆଶ୍ୱାସନା

ନାରଦ କହିଲେ, "ହେ ରାଜନ୍ ! ତୁମ୍ଭେ ଭାଗ୍ୟବାନ୍ ଓ ବୈଷ୍ଣବୋତ୍ତମ ଅଟ । ବିଷ୍ଣୁଭକ୍ତମାନଙ୍କ ବାଞ୍ଛା କଦାପି ବିଫଳ ହୁଏ ନାହିଁ । ତୁମ୍ଭେ ନିଶ୍ଚୟ ସେହି ନାରାୟଣଙ୍କୁ ଦର୍ଶନ କରି ପାରିବ । ଭଗବାନ ଭକ୍ତବତ୍ସଳ । ତାହାଙ୍କ ମାୟାଦ୍ୱାରା ଜଗତ ସୃଜିତ । ତୁମ୍ଭେ ବ୍ରହ୍ମାଙ୍କ ଅଧସ୍ତନ ପଞ୍ଚମ ପୁରୁଷ ଏବଂ ଅଷ୍ଟାଦଶବିଦ୍ୟାରେ ସୁପାରଗ । ହରି ନିଶ୍ଚୟ ପୁନର୍ବାର ସେଠାରେ ଅବତୀର୍ଣ୍ଣ ହେବେ ଏବଂ ତୁମ୍ଭେ ନିଶ୍ଚୟ ଚର୍ମଚକ୍ଷୁଦ୍ୱାରା କ୍ଷେତ୍ରଧାମରେ ତାହାଙ୍କୁ ଦେଖିପାରିବ । ପିତାମହ ବ୍ରହ୍ମା ତୁମ୍ଭର ଏହି କାର୍ଯ୍ୟ ପାଇଁ ମୋତେ ନିଯୁକ୍ତ କରି ପଠାଇ ଅଛନ୍ତି । ତେଣୁ ସେହି କ୍ଷେତ୍ରଧାମକୁ ଯାଇ ତୁମ୍ଭଙ୍କୁ ସମସ୍ତ ବିଷୟ ସବିଶେଷ କହିବି । ବର୍ତ୍ତମାନ ରାତ୍ରି ପ୍ରାୟ ଦ୍ୱିପହର; ସୁତରାଂ ସମସ୍ତେ

ବିଶ୍ରାମ କରିବାକୁ ଯାନ୍ତୁ ।'' ପିତାମହ ବ୍ରହ୍ମା ତାଙ୍କର ଏହି କାର୍ଯ୍ୟରେ ସହାୟକ ବୋଲି ଶୁଣି ଇନ୍ଦ୍ରଦ୍ୟୁମ୍ନ ସଭାସଦ୍‌ମାନଙ୍କୁ ବିଦାୟ ଦେଇ ଅନ୍ତଃପୁରକୁ ଗମନ କଲେ ।

---

## ନାରଦଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନଙ୍କ ଭୁବନେଶ୍ୱର ପ୍ରବେଶ ଓ ଭୁବନେଶ୍ୱର କଥା ବର୍ଣ୍ଣନ

ପରଦିନ ପ୍ରଭାତକାଳରେ ନିତ୍ୟକର୍ମ ସମାପନାନ୍ତେ ସମସ୍ତେ ଯାତ୍ରା କଲେ । ମହାନଦୀ ପାରହୋଇ ଉତ୍କଳାଧିପତି ପଥ ଦେଖାଇ ଆଗେ ଆଗେ ଚାଲିଲେ । ବର୍ତ୍ତମାନ ଭୁବନେଶ୍ୱର ବୋଲି ଜଣାଥିବା ଏକାମ୍ରକାନନ କ୍ଷେତ୍ରରେ ଉପସ୍ଥିତ ହେଲେ । ସେଠାରୁ ଅଳ୍ପଦୂର ଯାଇ ଗନ୍ଧବହା ନଦୀ ପାରହେଲେ ଏବଂ କୋଟିଲିଙ୍ଗେଶ୍ୱର ମହାଶମ୍ଭୁଙ୍କ ପୂର୍ବାହ୍ନବିହିତ ପୂଜାକାଳର ଶଙ୍ଖ, ଘଣ୍ଟା, ମୃଦଙ୍ଗ, ମୁରଜ ଓ କାହାଳୀ ପ୍ରଭୃତି ବାଦ୍ୟ ଯନ୍ତ୍ରର ଧ୍ୱନି ଶୁଣିବାକୁ ପାଇଲେ । ନୀଳଗିରି ଶିଖରବାସୀ ପ୍ରଭୁଙ୍କ ଧ୍ୱନି ଶୁଣାଗଲା କି ବୋଲି ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କୁ ପଚାରିଲେ । ନାରଦ କହିଲେ, "ସେହି ଦୁର୍ଲଭ କ୍ଷେତ୍ରଟି ଭଗବାନଙ୍କ ଗୋପନୀୟ । ତାହା କେହି ଜାଣନ୍ତି ନାହିଁ । ସେ କ୍ଷେତ୍ରଟି ଆଜି ତିନି ଯୋଜନ ଦୂରରେ ଅବସ୍ଥିତ । ଭବାନୀପତି ମହାଦେବ ନିକଟରେ ଏକାମ୍ରକାନନରେ ଅଛନ୍ତି । ଏହି ବାଦ୍ୟଧ୍ୱନି ସେହି ସ୍ଥାନରୁ ଶୁଣାଯାଉଛି ।" ଶିବ କୈଳାସଧାମରୁ ବାରାଣସୀ ଏବଂ ପରେ ଏ ସ୍ଥାନକୁ ଆସିବାର ଇତିହାସ ମଧ୍ୟ ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କଠାରୁ ଶୁଣିଲେ । ପୂର୍ବକାଳରେ ଶିବ ଶ୍ରୀପୁରୁଷୋତ୍ତମଙ୍କୁ ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ପୂଜା କରି ତାଙ୍କ ଆଜ୍ଞାନୁସାରେ ଏ କ୍ଷେତ୍ରଟି ନିର୍ମାଣ କରିଥିଲେ । ବ୍ରହ୍ମା ଏହି ସ୍ଥାନରେ ଶିବଙ୍କୁ ସ୍ଥାପନ କରିଥିଲେ । ଏଠାରେ ପୁରୁଷୋତ୍ତମ ଓ ଉମାପତି ଶିବ ଉଭୟ ରହିଅଛନ୍ତି । ତତ୍ପରେ ରାଜା ବିନ୍ଦୁତୀର୍ଥରେ ସ୍ନାନ କରି ତଟସ୍ଥିତ ପୁରୁଷୋତ୍ତମଙ୍କୁ ପୂଜାକରି ବ୍ରାହ୍ମଣମାନଙ୍କୁ ଗଜ, ଅଶ୍ୱ, ଧନ, ବସ୍ତ୍ର ଓ ଅଳଙ୍କାର ପ୍ରଦାନ କଲେ । ଶିବ ଓ ବିଷ୍ଣୁଙ୍କୁ ଅଭେଦରୂପ ବିବେଚନା କରି ତ୍ରିଭୁବନେଶ୍ୱର ଲିଙ୍ଗକୁ ମହାସ୍ନାନ ସହ ପୂଜାକଲେ । ଶିବ ସନ୍ତୁଷ୍ଟ ହୋଇ କହିଲେ, "ତୁମ୍ଭପରି ବିଷ୍ଣୁଭକ୍ତ ପୃଥିବୀରେ ଦୁର୍ଲଭ । ତୁମ୍ଭର

ମନୋବାଞ୍ଛା ପୂର୍ଣ୍ଣ ହେବ ।'' ପୁଣି ନାରଦଙ୍କୁ କହିଲେ ଯେ, "ପୁରୁଷୋତ୍ତମ କ୍ଷେତ୍ରଟି ବିଷ୍ଣୁଙ୍କର କଳେବର ସ୍ୱରୂପ । ତନ୍ମଧ୍ୟରେ ଅନ୍ତର୍ବେଦୀ ସ୍ଥାନ ତାଙ୍କର ହୃଦୟ ସଦୃଶ । ମୁଁ ସେହି ଅନ୍ତର୍ବେଦୀ ରକ୍ଷା କରିବା ପାଇଁ ଅଷ୍ଟମପ୍ରକାରରେ ସ୍ଥାପିତ ହୋଇ ରହିଅଛି । ତୁମ୍ଭେମାନେ ସେଠାକୁ ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଗମନ କର । ବର୍ତ୍ତମାନ ନୀଳକାନ୍ତ ମଣିମୟ ନୀଳମାଧବ ଅନ୍ତର୍ହିତ ହୋଇଅଛନ୍ତି । ସେଠାରେ ନରସିଂହ ଦେବଙ୍କ କ୍ଷେତ୍ର ନିର୍ମାଣ କରାଇବ ଏବଂ ସହସ୍ର ସଂଖ୍ୟକ ଅଶ୍ୱମେଧ ଯଜ୍ଞ ସମ୍ପନ୍ନ କର । ଯଜ୍ଞ ଶେଷରେ ବୃକ୍ଷରୂ ଯେଉଁ ନିର୍ମଳ ବୃକ୍ଷର ଆବିର୍ଭାବ ହେବ, ସେହି ବୃକ୍ଷ ଦ୍ୱାରା ବିଶ୍ୱକର୍ମା ଚାରି ଗୋଟି ମୂର୍ତ୍ତି ଗଠନ କରିବେ । ବ୍ରହ୍ମା ପରେ ଆସି ଉକ୍ତ ପ୍ରତିମାମାନଙ୍କ ପ୍ରତିଷ୍ଠା କରିବେ । ସହସ୍ର ବର୍ଷରେ ଏମନ୍ତ ସହସ୍ର ଅଶ୍ୱମେଧଯଜ୍ଞ ପରେ ବିଷ୍ଣୁଙ୍କୁ ଦାରୁମୟ ମୂର୍ତ୍ତିରେ ରାଜା ନିଶ୍ଚୟ ଦର୍ଶନ କରିବେ ।"

ଏହା ଶ୍ରବଣ କରି ନାରଦ ବିନୀତ ଭାବରେ କହିଲେ, "ବ୍ରହ୍ମା ମଧ୍ୟ ଏହିପରି ନିର୍ଦ୍ଦେଶ ଦେଇଅଛନ୍ତି । ଆପଣ ଓ ପିତାମହ ବ୍ରହ୍ମା ପରମାତ୍ମା ବିଷ୍ଣୁଙ୍କଠାରୁ ଭିନ୍ନ ନୁହନ୍ତି । ବିଷ୍ଣୁଙ୍କ ମହିମା ଅତି ଅନିର୍ବଚନୀୟ । ଜ୍ଞାନୀମାନଙ୍କ ମୁକ୍ତି ପାଇଁ ଶାସ୍ତ୍ରମାନଙ୍କରେ ଯେଉଁ ସବୁ ଉପାୟ ବର୍ଣ୍ଣିତ କରାଯାଇଅଛି, ସେହି ସବୁ ଉପାୟ ଦ୍ୱାରା ମୋକ୍ଷପଥ ଅନୁସରଣ କରାଯାଇପାରେ । ସେହିଦୃଷ୍ଟିରୁ ପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବା ଏକମାତ୍ର ପ୍ରଧାନ ଉପାୟ । ହେ ବୃଷଧ୍ୱଜ ! ଆପଣଙ୍କ ଆଜ୍ଞାରେ ସସୈନ୍ୟ ଇନ୍ଦ୍ରଦ୍ୟୁମ୍ନଙ୍କୁ ନୀଳପର୍ବତର ଉପତ୍ୟକାକୁ ନେଇ ତାଙ୍କୁ ମହାଯଜ୍ଞର ଅନୁଷ୍ଠାନରେ ଦୀକ୍ଷିତ କରିବି ।" ନାରଦଙ୍କ ଏପରି ପ୍ରାର୍ଥନାରେ ମହାଦେବ ଅନୁମତି ପ୍ରଦାନ କରି ଅନ୍ତର୍ହିତ ହେଲେ ।

---

# ପୁରୁଷୋତ୍ତମକ୍ଷେତ୍ରରେ ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରବେଶ ଏବଂ ନୀଳମାଧବଙ୍କ ଅନ୍ତର୍ଦ୍ଧାନରେ ଇନ୍ଦ୍ରଦ୍ୟୁମ୍ନଙ୍କ ବିଳାପ

ଏହାପରେ ବ୍ରହ୍ମର୍ଷି ନାରଦଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନ ପୁରୁଷୋତ୍ତମକ୍ଷେତ୍ରକୁ ଯାତ୍ରା କଲେ ଏବଂ ପଥରେ ପୁରୁଷୋତ୍ତମକ୍ଷେତ୍ରସ୍ଥ କପୋତେଶ୍ୱର ମହାଦେବଙ୍କ ନିକଟରେ ଉପସ୍ଥିତ ହେଲେ । ଏହି ସ୍ଥାନର ପୂର୍ବ ସୀମାରେ ସମୁଦ୍ର ତଟସ୍ଥ ବିଲ୍ୱେଶ୍ୱର ନାମକ ଏକ ଶିବ ଅଛନ୍ତି । କପୋତେଶ୍ୱର ଓ ବିଲ୍ୱେଶ୍ୱରଙ୍କ ଐତିହାସିକ କଥା ପରେ ସ୍ୱତନ୍ତ୍ର ବର୍ଣ୍ଣିତ ହେବ । କପୋତେଶ୍ୱର ଶିବଙ୍କୁ ପୂଜା ଓ ନମସ୍କାର କରି ନୀଳାଚଳସ୍ଥ ବିଷ୍ଣୁଙ୍କ ନିକଟକୁ ଯାଉଥିବା ସମୟରେ ରାଜାଙ୍କର ବାମବାହୁ ଓ ଚକ୍ଷୁ ଏକକାଳରେ ବାରମ୍ବାର ସ୍ପନ୍ଦିତ ହେଲା । ନାରଦଙ୍କୁ କାରଣ ପଚାରିବାରୁ ସେ କହିଲେ ଯେ, ଭଗବାନ ଲୋକଙ୍କର ସମକ୍ଷରେ ପ୍ରଥମେ ବିଘ୍ନ ଦେଖାଇ ପରେ ଶୁଭକାର୍ଯ୍ୟ ସମ୍ପନ୍ନ କରିଥାନ୍ତି । ଯାହାଙ୍କ ପାଇଁ ଆପଣଙ୍କ ଯାତ୍ରା, ସେ ଅନ୍ତର୍ହିତ ହୋଇ ଅଛନ୍ତି । କାରଣ ବିଦ୍ୟାପତି ଯେଉଁ ଦିନ ଭଗବାନଙ୍କୁ ଦର୍ଶନ କରିଥିଲେ ତହିଁର ଦିନ ସାୟଂକାଳରେ ସେ ସ୍ଥାନ ସ୍ୱର୍ଣ୍ଣବାଲୁକାରାଶି ଦ୍ୱାରା ଆବୃତ ହେବାରୁ, ପ୍ରଭୁ ପାତାଳକୁ ଗମନ କରିଅଛନ୍ତି । ଏଣୁ ସମ୍ପ୍ରତି ମର୍ତ୍ତ୍ୟଲୋକରେ ତାହାଙ୍କ ଦର୍ଶନ ଦୁର୍ଲଭ । ନାରଦଙ୍କଠାରୁ ଏହି ବଜ୍ରାଘାତ ସ୍ୱରୂପ ବାକ୍ୟ ଶ୍ରବଣ କରି ଇନ୍ଦ୍ରଦ୍ୟୁମ୍ନ ସଂଜ୍ଞାହୀନ ହୋଇ ବାତାହତ ରମ୍ଭାବୃକ୍ଷ ପ୍ରାୟ ଭୂତଳରେ ପତିତ ହେଲେ । ପୁରୋହିତ ଓ ଆତ୍ମୀୟ ଲୋକେ ହାହାକାର କରି କର୍ପୂର ସୁବାସିତ ଜଳ ତାହାଙ୍କ ମୁଖରେ ପୁନଃ ପୁନଃ ସେଚନ କଲେ ଏବଂ ଚନ୍ଦନ, ଅଗୁରୁ, କସ୍ତୁରୀ ପ୍ରଭୃତି ଗନ୍ଧଦ୍ରବ୍ୟ ତାହାଙ୍କ ସମୁଦାୟ ଅଙ୍ଗରେ ଲେପନ କରି ଚାମର ଦ୍ୱାରା ବ୍ୟଜନ କଲେ । ନାରଦ ଯୋଗବଳରେ ଇନ୍ଦ୍ରଦ୍ୟୁମ୍ନଙ୍କ ପରକାଳର ଶୁଭ ନିଶ୍ଚୟ ଜାଣି ତାହାଙ୍କ ପ୍ରାଣ ରକ୍ଷାକଲେ । ବହୁ ଯତ୍ନରେ କେତେକ ସମୟପରେ ରାଜା ସଂଜ୍ଞାଲାଭ କରି ନାରଦଙ୍କ ପଦତଳେ ପତିତ ହୋଇ ବିଳାପ କଲେ, "ଜନ୍ମାନ୍ତରର କି ପାପହେତୁ ମୋର ଦାରୁଣ ମନସ୍ତାପ ଘଟିଲା । ବିଦ୍ୟାପତି ଅତି ଭାଗ୍ୟବାନ । ସେ କେଉଁ ତପସ୍ୟାବଳରୁ

ଚର୍ମଚକ୍ଷୁରେ ନୀଳାଚଳପତି ନୀଳମାଧବଙ୍କ ଦର୍ଶନ ଲାଭ କଲେ ।" ତାପରେ ନିଜପୁତ୍ରକୁ ସ୍ୱରାଜ୍ୟରେ ଅଭିଷେକ କରାଇବା ପାଇଁ ପ୍ରାର୍ଥନା କଲେ ଏବଂ ନିଜେ ଏହିଠାରେ ରହି ଆମରଣ ବ୍ରତ ଅବଲମ୍ବନ କରି ନୀଳମାଧବଙ୍କ ଚିନ୍ତାରେ ଆୟୁଃ ଶେଷ କରିବେ ବୋଲି ପ୍ରତିଜ୍ଞା କଲେ ।

## ଇନ୍ଦ୍ରଦ୍ୟୁମ୍ନଙ୍କୁ ନାରଦଙ୍କ ସାନ୍ତ୍ୱନା ପ୍ରଦାନ ଓ ବ୍ରହ୍ମାଙ୍କ ଆଦେଶ ବର୍ଣ୍ଣନ

ନାରଦ ରାଜାଙ୍କୁ ସାନ୍ତ୍ୱନା ଦେଇ କହିଲେ ଯେ, "ଭଗବତ୍ ଲୀଳା ନିରଙ୍କୁଶ । ମୁଁ ନିଜେ ଜୀବନ୍ମୁକ୍ତ ହୋଇ ସୁଦ୍ଧା ତାଙ୍କ ଲୀଳା ଅତିକ୍ରମ କରିବାକୁ କ୍ଷମ ନୁହେଁ । ତାହାଙ୍କ ମାୟାର ଅନ୍ତ ନାହିଁ । ସ୍ୱୟଂ ବ୍ରହ୍ମା ତାହାଙ୍କ ନାଭିପଦ୍ମରେ ଅବସ୍ଥାନ କରି ସୁଦ୍ଧା ତାହାଙ୍କୁ ଜାଣିପାରନ୍ତି ନାହିଁ । ହରି ଚତୁର୍ଦ୍ଧାମୂର୍ତ୍ତିରେ ପ୍ରକଟିତ ହୋଇ ତୁମ୍ଭ ପ୍ରତି ଅନୁଗ୍ରହ କରିବେ ବୋଲି ବ୍ରହ୍ମା ମୋତେ କହି ଅଛନ୍ତି । ତୁମ୍ଭେ ବ୍ରହ୍ମାଙ୍କ ଅଧସ୍ତନ ପଞ୍ଚମ ସନ୍ତତି । ତୁମ୍ଭ ପାଇଁ ସେ ତୁମ୍ଭର ସହସ୍ର ଅଶ୍ୱମେଧଯଜ୍ଞ ପରେ ହରିଙ୍କୁ ଶ୍ୱେତଦ୍ୱୀପରୁ ଆଣିବେ । ତେଣୁ ତୁମ୍ଭେ ପୁରୁଷୋତ୍ତମ କ୍ଷେତ୍ରରେ ସହସ୍ର ଅଶ୍ୱମେଧ ଯଜ୍ଞ ସମାପନ କରି ଅପେକ୍ଷା କଲେ ଦାରୁମୟ ବିଷ୍ଣୁମୂର୍ତ୍ତିଙ୍କୁ ନିଜ ଚର୍ମଚକ୍ଷୁରେ ନିଶ୍ଚୟ ଦର୍ଶନ କରିପାରିବ । ପିତାମହ ବ୍ରହ୍ମା ସ୍ୱୟଂ ଏଠାକୁ ଆସି ଦାରୁମୟ ମୂର୍ତ୍ତି ଚତୁଷ୍ଟୟଙ୍କୁ ପ୍ରତିଷ୍ଠା କରି ଯିବେ । ଭଗବାନ୍ ଚତୁର୍ଦ୍ଧାମୂର୍ତ୍ତିରେ ବିରାଜିତ ଥିବାର ବିଦ୍ୟାପତି ଦେଖିଅଛନ୍ତି । ତେଣୁ ତୁମ୍ଭେ ଚିନ୍ତା କର ନାହିଁ । ସେହି ଶଙ୍ଖାକୃତି କ୍ଷେତ୍ରଧାମର ଦୁର୍ଗମ ଅଗ୍ରଭାଗରେ ଯେଉଁ ନୀଳକଣ୍ଠ ଶିବ ଅଛନ୍ତି, ତାଙ୍କ ନିକଟରେ ଉପଯୁକ୍ତ ସମତଳ ସ୍ଥଳରେ ସହସ୍ର ଅଶ୍ୱମେଧ ଯଜ୍ଞ ପାଇଁ ନରସିଂହମୂର୍ତ୍ତି ପ୍ରତିଷ୍ଠା କରିବାକୁ ହେବ । ସେ ସମସ୍ତ ବିଘ୍ନବିନାଶ କରିବେ । ଅତଏବ ବ୍ରହ୍ମାଙ୍କ ଆଦେଶରେ ସେଠାକୁ ଯାଇ ଉକ୍ତ ଯଜ୍ଞ କରନ୍ତୁ ।"

# ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ନୀଳାଚଳ ଗମନ ଓ ନରସିଂହ ମୂର୍ତ୍ତି ଦର୍ଶନ

ପରେ ନାରଦ ଓ ଇନ୍ଦ୍ରଦ୍ୟୁମ୍ନ ନୀଳକଣ୍ଠ ମହାଦେବଙ୍କ ସମୀପକୁ ଗମନ କଲେ । ସେଠାରେ ମହାଦେବ ଓ ଦୁର୍ଗାଙ୍କୁ ପୂଜା କରି ନୀଳପର୍ବତ ଉପରକୁ ଆରୋହଣ କରିବା ପାଇଁ ଅଗ୍ରସର ହେଲେ । ଏହି ପର୍ବତର ନିମ୍ନଦେଶ ଦକ୍ଷିଣସାଗର ତରଙ୍ଗରେ ପ୍ଲାବିତ । ଯେଉଁ କଳ୍ପକାଳସ୍ଥାୟୀ ଦେଶରେ ହିଂସ୍ରଜନ୍ତୁ ବାସ କରୁଥିଲେ ମଧ୍ୟ ସେମାନଙ୍କ ଭିତରେ ହିଂସାର ସ୍ଥାନ ନାହିଁ । ନୀଳାଚଳ ଶିଖରେ କୃଷ୍ଣାଗୁରୁ ବୃକ୍ଷତଳେ ଅବସ୍ଥିତ ମୁଖବ୍ୟାଦାନ ପୂର୍ବକ ଭୀଷଣାକୃତି ନରସିଂହ ମୂର୍ତ୍ତିଙ୍କୁ ନିକଟରେ ଦର୍ଶନ କଲେ । ଏହାଙ୍କୁ ଦର୍ଶନ କଲେ କୋଟି କୋଟି ବ୍ରହ୍ମହତ୍ୟା ପାପ ଧ୍ୱଂସ ହୁଏ । ନରସିଂହ ଦର୍ଶନରେ ନିଜର ପାପରାଶି ଦୂର ହୋଇଅଛି ବୋଲି ରାଜା ଇନ୍ଦ୍ରଦ୍ୟୁମ୍ନ ପ୍ରକାଶ କଲେ ଏବଂ ନୀଳମାଧବ କେଉଁଠାରେ ଥିଲେ ବୋଲି ନାରଦଙ୍କୁ ପଚାରିଲେ । ନାରଦ ସ୍ୱର୍ଣ୍ଣବାଲୁକାରାଶିଦ୍ୱାରା ଆବୃତ ସ୍ଥାନ ଦେଖାଇ କହିଲେ, "ଏହି ଯେଉଁ ବଟବୃକ୍ଷ ଦେଖୁଅଛ, ତାହା ଏକ ଯୋଜନ ବିସ୍ତୃତ ଓ ଦୁଇ ଯୋଜନ ଉନ୍ନତ ଅଟେ । ଏହା କଳ୍ପାନ୍ତ ପର୍ଯ୍ୟନ୍ତ ସ୍ଥାୟୀ । ଛାୟା ସ୍ପର୍ଶମାତ୍ରେ ମାନବ ପାପ କଞ୍ଚୁକରୁ ମୁକ୍ତ ହୁଏ; ମୂଳଦେଶରେ ପ୍ରାଣତ୍ୟାଗ କଲେ ମୁକ୍ତି ଲାଭ ହୁଏ । ବୃକ୍ଷର ପଶ୍ଚିମ ଦିଗରେ ଓ ନୃସିଂହଦେବଙ୍କ ଉତ୍ତର ଦିଗରେ ନୀଳମାଧବ ବିରାଜିତ ଥିଲେ । ସେ ନିଶ୍ଚୟ ଏଠାରେ ଆବିର୍ଭୂତ ହେବେ । ଶ୍ୱେତଦ୍ୱୀପ ଯେପରି ବିଷ୍ଣୁଙ୍କ ଭୋଗଭୂମି, ସେହିପରି କର୍ମଭୂମି ଜମ୍ବୁଦ୍ୱୀପ ମଧ୍ୟରେ ଏହି ସ୍ଥାନ ପ୍ରଭୁଙ୍କ ଲୀଳାସ୍ଥଳୀ ଅଟେ । ଏ ସ୍ଥାନଟି ଗୋପନୀୟ ହେତୁ ଲୋକରେ ପ୍ରଚରିତ ନ ଥିଲା । ଯେଉଁମାନେ ମୋକ୍ଷର ଅଧିକାରୀ, କେବଳ ସେହିମାନେ ଏହି ସ୍ଥାନକୁ ଜାଣିପାରନ୍ତି । ପ୍ରଭୁଙ୍କ ଆବିର୍ଭାବ ଓ ତିରୋଭାବ କୌଣସି କୌଣସି ବିଶିଷ୍ଟ କାରଣରୁ ଘଟିଥାଏ । ସାଧୁମାନଙ୍କ ପରିତ୍ରାଣ ଓ ପାପୀଙ୍କ ବିନାଶ ପାଇଁ ପ୍ରଭୁ ଯୁଗେ ଯୁଗେ ନାନା ଅବତାର ଗ୍ରହଣ କରନ୍ତି । ସେ ସବୁ କାରଣର ଅବସାନ ପରେ ପୁନଃ ନିଜ କ୍ଷେତ୍ରରେ କୃପା କରି ପ୍ରକାଶିତ ହୁଅନ୍ତି । ଏହି କ୍ଷେତ୍ର ତାଙ୍କର କଳେବର ସ୍ୱରୂପ ଏବଂ ଏହାକୁ ସେ କଦାପି ତ୍ୟାଗ କରନ୍ତି ନାହିଁ । ଇନ୍ଦ୍ରଦ୍ୟୁମ୍ନ ନିଜ ଚର୍ମଚକ୍ଷୁ ଦ୍ୱାରା

ମୁକ୍ତିପ୍ରଦ ଭଗବାନଙ୍କ ଦିବ୍ୟମୂର୍ତ୍ତି ସନ୍ଦର୍ଶନ କରିବାପାଇଁ ଏ ସ୍ଥାନରେ ପ୍ରଣାମ କଲେ । ଶୂନ୍ୟରୁ ତାଙ୍କର ଶ୍ରବଣରେ ଆକାଶବାଣୀ ନିମ୍ନୋକ୍ତ ପ୍ରକାରେ ଉଚ୍ଚାରିତ ହେଲା—"ହେ ଭୂପାଳ ! ତୁମ୍ଭେ ଚିନ୍ତା କର ନାହିଁ । ମୁଁ ତୁମ୍ଭ ନୟନପଥରେ ଅବତୀର୍ଣ୍ଣ ହେବି । ବ୍ରହ୍ମାଙ୍କ ଆଦେଶାନୁସାରେ କାର୍ଯ୍ୟ କର ।" ଆକାଶବାଣୀ ଶ୍ରବଣ କରି ରାଜା ଅଶ୍ୱମେଧଯଜ୍ଞ କରିବାକୁ ଉଦ୍ୟତ ହେଲେ ଏବଂ ନାରଦଙ୍କ ଉପଦେଶାନୁସାରେ କାର୍ଯ୍ୟ କରିବାକୁ ପ୍ରକାଶ କଲେ । ନାରଦ ସନ୍ତୁଷ୍ଟ ହୋଇ କହିଲେ ଯେ, ବ୍ରହ୍ମା ତୁମ୍ଭର ସମସ୍ତ କାର୍ଯ୍ୟରେ ସହାୟକ ହେବେ । ଅତଏବ ଆସନ୍ତୁ; ନୀଳକଣ୍ଠଙ୍କ ନିକଟକୁ ଯାଇ ତାହାଙ୍କ ସମ୍ମୁଖ ସ୍ଥାନରେ ନରସିଂହ ଦେବଙ୍କୁ ପଶ୍ଚିମମୁଖ କରି ସ୍ଥାପନ କରିବା । ଭଗବାନ ଅନ୍ତର୍ହିତ ହେଲେ ସୁଦ୍ଧା ନରସିଂହ ପ୍ରତ୍ୟକ୍ଷ ରହିଅଛନ୍ତି । ଏଠାରେ ଯଜ୍ଞାନୁଷ୍ଠାନ ସଫଳ ହେବ । ମୋର ସ୍ମରଣମାତ୍ରକେ ବିଶ୍ୱକର୍ମା ଏଠାକୁ ଆସି ପଶ୍ଚିମ ଦ୍ୱାରରେ ଏକ ପ୍ରାସାଦ ନିର୍ମାଣ କରିଦେବେ । ନୀଳକଣ୍ଠଙ୍କ ଦକ୍ଷିଣ ଦିଗରେ ଯେଉଁ ବିଶାଳ ଚନ୍ଦନ ବୃକ୍ଷ ଅଛି, ତାହାର ପଶ୍ଚିମ ଦିଗରେ ନରସିଂହଦେବଙ୍କ କ୍ଷେତ୍ର ପ୍ରସ୍ତୁତ ହେବ । ମୁଁ ଏଠାରେ ପାଞ୍ଚ ଦିନ ମାତ୍ର ରହିବି ଏବଂ ଅନନ୍ତ ଜ୍ୟୋତିର୍ମୟ ନରସିଂହଦେବଙ୍କୁ ଆରାଧନା କରି ତାହାଙ୍କ ପ୍ରତିମାର ପ୍ରାଣ ପ୍ରତିଷ୍ଠା କରିବି । ତଦନନ୍ତର ରାଜା ଚନ୍ଦନଦ୍ରୁମ ନିକଟକୁ ଯାଇ ଶିଳ୍ପଶାସ୍ତ୍ରବିଶାରଦ ବିଶ୍ୱକର୍ମାଙ୍କ ପୁତ୍ର ମନୁଷ୍ୟ ରୂପଧାରୀ ହୋଇ ଆସିଥିବାର ଦେଖିଲେ ଏବଂ ନରସିଂହ ଦେବଙ୍କ ପ୍ରାସାଦ ନିର୍ମାଣ କରିବାକୁ ତାଙ୍କୁ ଅନୁରୋଧ କଲେ । ତତ୍ପରେ ରାଜା ଦେବଶିଳ୍ପୀଙ୍କୁ ଅର୍ଚ୍ଚନାପୂର୍ବକ ବହୁ ବିତ୍ତ ବ୍ୟୟ ଦ୍ୱାରା ଶିଳାସଂଗ୍ରହକାରୀ ଭୃତ୍ୟଙ୍କୁ ନିଯୁକ୍ତ କଲେ । ପ୍ରାସାଦ ନିର୍ମାଣ କାର୍ଯ୍ୟ ବହୁକାଳ ସାଧ୍ୟ ହେଲେ ସୁଦ୍ଧା ଗୁରିଦିନରେ ଦେବଶିଳ୍ପୀଙ୍କ ଦ୍ୱାରା ନିର୍ମିତ ହେଲା । ପଞ୍ଚମ ଦିନ ପ୍ରାତଃକାଳଠାରୁ ନିତ୍ୟକର୍ମ ସମାପନାନ୍ତେ ରାଜା ପ୍ରତିଷ୍ଠା ଦ୍ରବ୍ୟ ସଂଗ୍ରହପୂର୍ବକ ନାରଦଙ୍କର ଆଗମନର ପ୍ରତୀକ୍ଷା କରୁଥିବା ସମୟରେ ଆକାଶମଣ୍ଡଳରେ ଶଙ୍ଖ, ମୃଦଙ୍ଗ, ମୁରଜ ପ୍ରଭୃତି ବାଦ୍ୟଧ୍ୱନି ଓ ମାଙ୍ଗଳ୍ୟ ଗୀତ ଏବଂ ଜୟ ଜୟ ଶବ୍ଦ ଶୁଣାଗଲା । ସମସ୍ତେ ବିସ୍ମିତ ହେଲେ । ଦକ୍ଷିଣଦିଗରୁ ସୁଗନ୍ଧ ବାୟୁ ପ୍ରବାହିତ ହେଲା । ଆକାଶରୁ ଗଙ୍ଗାଙ୍କ ସୁଶୀତଳ ଜଳ ସହିତ ପୁଷ୍ପବୃଷ୍ଟି ହେଲା । ତତ୍ପରେ ନାରଦ ତାଙ୍କ ତପଃପ୍ରଭାବୋତ୍ପନ୍ନ ମନୋହର ରଥରୁ ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ନିର୍ମିତ ନରସିଂହ ପ୍ରତିମା ସହ

ଅବତରଣ କଲେ । ଏହି ନରସିଂହମୂର୍ତ୍ତି ବିବିଧ ରତ୍ନରେ ଭୂଷିତ ହୋଇଥିଲେ । ଗଳାରେ ଦିବ୍ୟମାଳା, କଟିତଟରେ ଦିବ୍ୟବସ୍ତ୍ର ଓ ସର୍ବାଙ୍ଗ ଦିବ୍ୟ ଗନ୍ଧଦ୍ୱାରା ଲିପ୍ତ ହୋଇଥିଲା । ରାଜା ଅତି ହୃଷ୍ଟଚିତ୍ତରେ ମୂର୍ତ୍ତିଙ୍କୁ ପ୍ରଦକ୍ଷିଣ କରି ଭୂମିରେ ସାଷ୍ଟାଙ୍ଗ ପ୍ରଣାମ କଲେ । ପରେ ନାରଦ ଶୁଭମୁହୂର୍ତ୍ତରେ ପୂର୍ବୋକ୍ତ ନିର୍ମିତ ମନ୍ଦିର ମଧ୍ୟସ୍ଥ ରତ୍ନବେଦୀ ଉପରେ ନରସିଂହଦେବଙ୍କୁ ସ୍ଥାପନ କଲେ । ଇନ୍ଦ୍ରଦ୍ୟୁମ୍ନ ଯଥାବିଧି ଅର୍ଚ୍ଚନା କରି ବୃହତ୍ ଓ ଉପନିଷଦରେ ବର୍ଣ୍ଣିତ ସ୍ତବ ପାଠ କଲେ । ବର୍ଣ୍ଣିତ ଅଛି ଯେ ଚତସ୍ଥ ଶମ୍ଭୁଙ୍କ ସହିତ ନରସିଂହ ମୂର୍ତ୍ତିଙ୍କୁ ଦର୍ଶନ କଲେ ଦେହ-ବନ୍ଧନରୁ ମୁକ୍ତିଲାଭ ହୁଏ । ମହର୍ଷି ନାରଦ ଜ୍ୟେଷ୍ଠ ମାସ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥି ସ୍ୱାତି ନକ୍ଷତ୍ରରେ ଏହି କ୍ଷେତ୍ରଧାମରେ ନରସିଂହଦେବଙ୍କୁ ପ୍ରତିଷ୍ଠା କରିଥିଲେ । ଯେଉଁମାନେ ପଞ୍ଚାମୃତ ଦୁଗ୍ଧ ବା ନାରିକେଳ ଜଳ ବା ସୁଗନ୍ଧଯୁକ୍ତ ଜଳଦ୍ୱାରା ନରସିଂହଦେବଙ୍କୁ ସ୍ନାନ କରାଇ ଜବା ପୁଷ୍ପମାଳା, ଧୂପ ଦୀପ, ପାୟସ ଓ ତାମ୍ବୁଳ ଉପଚାର ଦ୍ୱାରା ଅର୍ଚ୍ଚନା ପୂର୍ବକ ଯଥାଶକ୍ତି ବ୍ରାହ୍ମଣଙ୍କୁ ଦାନ କରନ୍ତି; ସେମାନେ ସର୍ବୋତ୍ତମ ବ୍ରହ୍ମଲୋକକୁ ଗମନ କରନ୍ତି । ବୈଶାଖ ମାସର ଶୁକ୍ଳ ଚତୁର୍ଦ୍ଦଶୀ ଶନିବାର ସ୍ୱାତି ନକ୍ଷତ୍ର ସଂଯୁକ୍ତ ପ୍ରଦୋଷ ସମୟରେ ନରସିଂହଦେବଙ୍କ ପ୍ରଥମ ଆବିର୍ଭାବ ହୋଇଥିଲା । ତେଣୁ ଉକ୍ତ ଦିନ ନରସିଂହଦେବଙ୍କୁ ଭକ୍ତି ସହକାରେ ଯଥାବିଧି ପୂଜା କଲେ ସହସ୍ର କୋଟି ଜନ୍ମାର୍ଜ୍ଜିତ ପାପରାଶି ଅଗ୍ନିରେ ତୁଳାରାଶିପରି ଭସ୍ମୀଭୂତ ହୋଇଥାଏ ।

---

## ଇନ୍ଦ୍ରଦ୍ୟୁମ୍ନଙ୍କ ସହସ୍ର ଅଶ୍ୱମେଧଯଜ୍ଞ କଥା

ନୃସିଂହଦେବଙ୍କ ପ୍ରତିଷ୍ଠା ପରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧଯଜ୍ଞ ପାଇଁ ପ୍ରଥମେ ଇନ୍ଦ୍ରାଦି ଦେବତାଙ୍କୁ ନିମନ୍ତ୍ରଣ କଲେ । ପରେ ସହସ୍ର ସହସ୍ର ସଦସ୍ୟଙ୍କ ଚତୁର୍ବେଦାଧ୍ୟାୟୀ ଯଜ୍ଞପାରଦର୍ଶୀ ମୀମାଂସା-ଶାସ୍ତ୍ରନିପୁଣ ବ୍ରାହ୍ମଣଙ୍କୁ, ସିଦ୍ଧ ଋଷିଗଣଙ୍କୁ, ଅଷ୍ଟାଦଶ ବିଦ୍ୟା ବିଶାରଦ ସଦାଚାର ସମ୍ପନ୍ନ ବ୍ୟକ୍ତିମାନଙ୍କୁ, ରାଜାମାନଙ୍କୁ, ଏବଂ ଦ୍ୱୀପାଧିପତିମାନଙ୍କୁ ନିମନ୍ତ୍ରଣ କଲେ । ଏହାଛଡ଼ା ବଣିକ ଓ ସଚ୍ଛୂଦ୍ରମାନେ ମଧ୍ୟ ନିମନ୍ତ୍ରିତ ହୋଇଥିଲେ । ସଭାସ୍ଥଳ ପ୍ରାୟ ଦୁଇ କ୍ରୋଶ ବ୍ୟାପୀ ଥିଲା । ସ୍ଥାନେ ସ୍ଥାନେ ସ୍ଫଟିକ ପଥର ଓ ରଜତ

ପ୍ରଭୃତିର ବିନ୍ୟାସ ଦ୍ୱାରା ଅତି ସୁଦୃଶ୍ୟ ହୋଇଥିଲା । ସ୍ତମ୍ଭଗୁଡ଼ିକ ଉତ୍ତମପଟ୍ଟ ଓ ଯଥାସ୍ଥାନରେ ବସ୍ତ୍ର ବେଷ୍ଟନ କରା ହୋଇଥିଲା । ମନୋରମ ଚନ୍ଦ୍ରାତପ ଉପରିଭାଗରେ ଶୋଭାପାଉଥିଲା । ଇନ୍ଦ୍ରଦ୍ୟୁମ୍ନ ନିମନ୍ତ୍ରିତ ବ୍ୟକ୍ତିଙ୍କୁ ଯଥାଯୋଗ୍ୟ ଆସନରେ ନିମ୍ନୋକ୍ତ ପ୍ରକାରେ ନେଇ ଉପବେଶନ କରାଉଥିଲେ । ରାଜାମାନଙ୍କ ପାଇଁ ସିଂହାସନ, ମୁନିମାନଙ୍କ ପାଇଁ ଅତି ଶ୍ରେଷ୍ଠ ଆସନ, ସିଦ୍ଧ ଓ ବ୍ରହ୍ମର୍ଷିମାନଙ୍କ ପାଇଁ ବହୁମୂଲ୍ୟ କୁଶାସନ, ଦେବଗଣଙ୍କପାଇଁ ସ୍ୱର୍ଣ୍ଣପୀଠ ପ୍ରଭୃତି ନିର୍ମିତ ହୋଇଥିଲା । ଇନ୍ଦ୍ରଙ୍କୁ ବସ୍ତ୍ରରତ୍ନ ପ୍ରଦାନ କରି ଦିବ୍ୟମାଲ୍ୟ ଓ ଗନ୍ଧବସ୍ତ୍ର ଦ୍ୱାରା ପୁରୋହିତଙ୍କୁ ଅର୍ଚ୍ଚନା କରାଗଲା । ଦରିଦ୍ରମାନଙ୍କୁ ଧନ ଦାନ ଦିଆଯାଉଥିଲା । ମୁନି, ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟଙ୍କର ଯଥାବିଧି ଅର୍ଚ୍ଚନାରେ କୌଣସି ଅବହେଳା କରାଯାଇ ନ ଥିଲା । ସଚିବମାନଙ୍କ ଦ୍ୱାରା ଅନ୍ୟାନ୍ୟଙ୍କୁ ସମ୍ମାନ ଦେଖାଇ ଅର୍ଚ୍ଚନା କରିବାର ବ୍ୟବସ୍ଥା ମଧ୍ୟ ହୋଇଥିଲା । ରାଜା ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ସହିତ ଇନ୍ଦ୍ରଙ୍କ ନିକଟରେ ଉପସ୍ଥିତ ହୋଇ ସଭକ୍ତିରେ ନିବେଦନ କଲେ, "ମୁଁ ଅଶ୍ୱମେଧ ଯଜ୍ଞ କରିବାକୁ ଇଚ୍ଛୁକ; କିନ୍ତୁ ଇନ୍ଦ୍ରପଦ ଆଶାରେ ନୁହେଁ । ତେଣୁ ଯଜ୍ଞ ସମ୍ପୂର୍ଣ୍ଣ ପର୍ଯ୍ୟନ୍ତ ଦେବଗଣଙ୍କ ସହିତ ଏଠାରେ ଅବସ୍ଥାନ କରନ୍ତୁ । ଇନ୍ଦ୍ର ପ୍ରସନ୍ନ ହୋଇ ପ୍ରକାଶ କଲେ ଯେ, ନୀଳମାଧବଙ୍କ ଅନ୍ତର୍ଦ୍ଧାନ ପରେ ଯେଉଁ ଆକାଶବାଣୀ ହୋଇଥିଲା, ତାହା ସେ ଶୁଣିଅଛନ୍ତି । ହରି ଦାରୁବ୍ରହ୍ମ ରୂପରେ ଏହିଠାରେ ପ୍ରକାଶିତ ହେବେ । ଆମ୍ଭେମାନେ ସନ୍ତୁଷ୍ଟ ହୋଇ ତୁମ୍ଭର ଏହି କାର୍ଯ୍ୟରେ ସହାୟକ ହେବୁଁ । ଆମ୍ଭେମାନେ ମଧ୍ୟ ଦେହତ୍ୟାଗ କରି ନରରୂପୀ ହୋଇ ଏହି କ୍ଷେତ୍ରରେ ଭଗବାନଙ୍କୁ ଆରାଧନା କରିବୁଁ । ଇନ୍ଦ୍ରଦ୍ୟୁମ୍ନ ଏହା ଶୁଣି ଯଥାବିଧି ଯଜ୍ଞ ଆରମ୍ଭ କଲେ । ପ୍ରଥମରେ ଭଗବାନଙ୍କ ପୂଜା ଓ ପିତୃଗଣଙ୍କ ନାନ୍ଦୀଶ୍ରାଦ୍ଧ ସମ୍ପନ୍ନ ହେଲା । ତତ୍ପରେ ସପତ୍ନୀକ ଇନ୍ଦ୍ରଦ୍ୟୁମ୍ନ ବିଶୁଦ୍ଧ ମାଙ୍ଗଲ୍ୟବେଶ ଧାରଣ କରି ପୁଣ୍ୟାହ, ଋଦ୍ଧି ଓ ସ୍ୱସ୍ତି ବାଚନ ପରେ ଋତ୍ୱିକ୍‌ମାନଙ୍କୁ ଯଥାବିଧି ବରଣ କଲେ । ଶାସ୍ତ୍ରନିୟମାନୁଯାୟୀ ବୈଷ୍ଣବାଗ୍ନିଙ୍କୁ ଆବାହନ କରାଗଲା । ଏହାପରେ ଯଜ୍ଞ ଆରମ୍ଭ ହେବାପରେ ଶୁଭଲକ୍ଷଣାଙ୍ଗ ଅଶ୍ୱ ଗୋଟିଏ ଛାଡ଼ି ଦିଆଗଲା । ରାଜା ନିଜେ ଦୀକ୍ଷିତ ହୋଇ ବାକ୍ୟ ସଂଯମ କରି ମୃଗଚର୍ମାସନରେ ଉପବେଶନ କଲେ ଏବଂ ସାକ୍ଷାତ୍ ମୃତ୍ୟୁଞ୍ଜୟଙ୍କ ପରି ଶୋଭା ପାଇଲେ । ଦେବତାଙ୍କ ପାଇଁ ରତ୍ନପାତ୍ର, ମୁନି

ବ୍ରାହ୍ମଣ ଓ ରାଜାମାନଙ୍କପାଇଁ ବିଶୁଦ୍ଧ ସୁବର୍ଣ୍ଣପାତ୍ର, କ୍ଷତ୍ରିୟ ଓ ବୈଶ୍ୟମାନଙ୍କ ପାଇଁ ନିର୍ମଳ ରୌପ୍ୟପାତ୍ର ଏବଂ ଶୂଦ୍ରମାନଙ୍କ ପାଇଁ ପରିଷ୍କୃତ କାଂସ୍ୟପାତ୍ର ପ୍ରତିଦିନ ରାଶି ରାଶି ନୂତନ ନୂତନ ପ୍ରସ୍ତୁତ ହେଉଥିଲା । କାରଣ ପ୍ରତ୍ୟହ ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ଭୋଜନ ଶେଷରେ ସେଗୁଡ଼ିକ କଦଳୀପତ୍ର ପରି ଫୋପାଡ଼ି ଦିଆଯାଉଥିଲା । ନିମନ୍ତ୍ରିତ ବ୍ୟକ୍ତିମାନଙ୍କ ପୁତ୍ରପୌତ୍ରାଦିକ୍ରମେ ପଞ୍ଚଶତ ବର୍ଷ ପର୍ଯ୍ୟନ୍ତ ସୁଖାଦ୍ୟ ଭୋଜନ କରିବା ପାଇଁ ପ୍ରଚୁର ଧନରତ୍ନ ମଧ୍ୟ ଦାନ କରାଗଲା । ରାଜାମାନେ ନିଜ ନିଜ ଦେଶର ଲୋକଙ୍କ ପରିଚର୍ଯ୍ୟାଭାର ବହନ କରିବାକୁ ଇନ୍ଦ୍ରଦ୍ୟୁମ୍ନ ପ୍ରାର୍ଥନା କରିବାରୁ ସେମାନେ ସାନନ୍ଦରେ ଏହି ଭାର ଗ୍ରହଣ କରିଥିଲେ ଏବଂ ନାରଦ ନିଜେ ଇଚ୍ଛାକରି ମହାରାଜାମାନଙ୍କର ତତ୍ତ୍ୱାବଧାନର ଭାର ମଧ୍ୟ ଆଗ୍ରହରେ ବହନ କରିଥିଲେ । ଇନ୍ଦ୍ରାଦି ଦେବତା ଓ ଦେବର୍ଷି-ମାନଙ୍କର ପରିଚର୍ଯ୍ୟା ଇନ୍ଦ୍ରଦ୍ୟୁମ୍ନ ସ୍ୱୟଂ କରୁଥିଲେ । ମର୍ତ୍ତ୍ୟବାସୀମାନେ ସ୍ୱର୍ଗଦୁର୍ଲଭ ଖାଦ୍ୟାଦି ଉପଭୋଗ କରୁଥିଲେ ଏବଂ ପାତାଳବାସୀମାନେ ଏହି ଯଜ୍ଞରେ ଅମୃତଠାରୁ ଅତି ମଧୁର ଖାଦ୍ୟ ଭୋଜନରେ ସନ୍ତୁଷ୍ଟ ହୋଇ ପାତାଳକୁ ଫେରିଯିବାକୁ ଇଚ୍ଛା ପ୍ରକାଶ କରି ନ ଥିଲେ । "ନ ଭୂତୋନ ଭବିଷ୍ୟତି" ଭାବରେ ନାନାବିଧ ଅର୍ଚ୍ଚନାରେ କୌଣସି ତ୍ରୁଟି ପରିଲକ୍ଷିତ ହେଉ ନ ଥିଲା । ଏହି ମହାଯଜ୍ଞରେ ଯଜ୍ଞାନୁଷ୍ଠାନକୁଶଳ ସଦାଚାରପରାୟଣ ଶ୍ରୁତିକାର, ସ୍ମୃତିକାର ଓ କଳ୍ପକାର ପ୍ରଭୃତି ଅଗ୍ନ୍ୟାଧାନରୁ ଆରମ୍ଭ କରି ଅବଭୃଥ-ସ୍ନାନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ସମ୍ପନ୍ନ କରୁଥିଲେ । ଏହି ପ୍ରକାରରେ ଜଗଦୀଶ୍ୱରଙ୍କ ପ୍ରସନ୍ନତା ପାଇଁ ବ୍ରହ୍ମାଙ୍କ ନିର୍ଦ୍ଦେଶାନୁସାରେ ମହାରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଅଶ୍ୱମେଧଯଜ୍ଞ କାର୍ଯ୍ୟ ଭ୍ରମେ ୯୯୯ ( ନଅଶତ ଊନେଶତ ) ବର୍ଷ ସମ୍ପୂର୍ଣ୍ଣ ହେଲା ।

## ଇନ୍ଦ୍ରଦ୍ୟୁମ୍ନଙ୍କ ଶେଷ ସାହସ୍ରିକ ଅଶ୍ୱମେଧ ଯଜ୍ଞ

ଏହା ପରେ ଶେଷ ସାହସ୍ରିକ ଅଶ୍ୱମେଧଯଜ୍ଞରେ ମହାରାଜ ଦୀକ୍ଷିତ ହେଲେ । ଯଜ୍ଞ ସମାପ୍ତିର ସପ୍ତମ ଦିବସ ପୂର୍ବ ରାତ୍ରର ଶେଷ ପ୍ରହରରେ ସ୍ୱପ୍ନରେ ବିଷ୍ଣୁମୂର୍ତ୍ତିଙ୍କୁ ଏହିପରି ଭାବରେ ଦର୍ଶନ କଲେ—ସ୍ଫଟିକ ନିର୍ମିତ ଶ୍ୱେତଦ୍ୱୀପ; ତାହାର ଚତୁର୍ଦ୍ଦିଗରେ ଜୀବଗଣ ଅବସ୍ଥିତ ଅଛନ୍ତି । ସେଠାରେ ବୃହତ୍ କଳ୍ପଦ୍ରୁମ ପୁଷ୍ପର ସୁଗନ୍ଧ ଅନୁଭୂତ ହେଉଅଛି । ଦ୍ୱୀପର ମଧ୍ୟଭାଗରେ ଦିବ୍ୟମଣିନିର୍ମିତ ସୂର୍ଯ୍ୟକିରଣ ସଦୃଶ ଆଭାଯୁକ୍ତ ରତ୍ନ-ସିଂହାସନରେ ଶଙ୍ଖଚକ୍ରଗଦାପଦ୍ମଧାରୀ ବିଷ୍ଣୁ ବିରାଜମାନ । ଦକ୍ଷିଣରେ ଧରଣୀଧର ଅନନ୍ତଦେବ, ବାମରେ ସୁଲକ୍ଷଣା ଲକ୍ଷ୍ମୀ, ଅଗ୍ରଭାଗରେ ବ୍ରହ୍ମା କୃତାଞ୍ଜଳିପୁଟରେ ଅବସ୍ଥିତ । ସନକ ସନନ୍ଦାଦି ମୁନୀନ୍ଦ୍ରମାନେ ସ୍ତବ କରୁଅଛନ୍ତି । ବିଷ୍ଣୁଙ୍କୁ ଏପରି ଅବସ୍ଥାରେ ଦର୍ଶନ କରି ରାଜା ପ୍ରାର୍ଥନା କଲେ, ହେ ପ୍ରଭୋ ! ଆପଣ ଦର୍ଶକମାନଙ୍କ ପରମାନନ୍ଦର କାରଣ । ମୁଁ ଦୀନ, ମୋତେ ପରିତ୍ରାଣ କରନ୍ତୁ । ତତ୍ପରେ ନିଦ୍ରାଭଙ୍ଗ ହେବାରୁ ରାଜା ସ୍ୱପ୍ନବୃତ୍ତାନ୍ତ ନାରଦଙ୍କୁ କହିଲେ । ନାରଦ ଶୁଣି ଆନନ୍ଦିତ ହୋଇ ଉତ୍ତର କଲେ, "ଅରୁଣୋଦୟ କାଳରେ ସ୍ୱପ୍ନରେ ଭଗବାନଙ୍କୁ ଦେଖିଅଛ । ଦଶ ଦିନ ମଧ୍ୟରେ ନିଶ୍ଚୟ ଫଳଲାଭ ହେବ । ସାହସ୍ରିକ ଅଶ୍ୱମେଧଯଜ୍ଞ ଶେଷରେ ଭଗବାନ ଅବଶ୍ୟ ଆବିର୍ଭୂତ ହେବେ ।"

ତହିଁଉତ୍ତାରୁ ଯଜ୍ଞର ଅବଶିଷ୍ଟ କାର୍ଯ୍ୟ ଯଥାବିଧି ସମ୍ପନ୍ନ ହେଲା । ଇନ୍ଦ୍ରଦ୍ୟୁମ୍ନଙ୍କ ଅବଭୃଥ ସ୍ନାନ ପାଇଁ ଆୟୋଜନ କରାଗଲା । ବ୍ରାହ୍ମଣ-ମାନଙ୍କର ଉଦାତ୍ତାଦି ସ୍ୱରରେ ଉଚ୍ଚାରିତ ପଦାବଳୀ, ନାନାବିଧ ସ୍ତୋତ୍ର ଓ ବିବିଧ ଶାସ୍ତ୍ରୀୟ ବାକ୍ୟ ଉଚ୍ଚାରଣ ଦ୍ୱାରା ଚତୁର୍ଦ୍ଦିଗ ପବିତ୍ର ଧ୍ୱନିରେ ମୁଖରିତ ହେଉଥିଲା । ପ୍ରାର୍ଥୀମାନଙ୍କ ଅଭିଳାଷ ପୂରଣ ନିମିତ୍ତ ନାନାବିଧ ଦ୍ରବ୍ୟ ବିତରିତ ହେଲା । ଇନ୍ଦ୍ରଦ୍ୟୁମ୍ନ କଳ୍ପବୃକ୍ଷପରି ଯଜ୍ଞସଭାର ଅନ୍ୟାନ୍ୟ ବ୍ୟକ୍ତିଙ୍କୁ ଇଚ୍ଛାନୁଯାୟୀ ପାରିତୋଷିକ ଦେଲେ ।

## ମହୋଦଧି ତଟରେ ଅପୌରୁଷେୟ ଦାରୁଦର୍ଶନ

ଇତ୍ୟବସରରେ ମହୋଦଧି ତଟରେ ବିଲ୍ୱେଶ୍ୱର ମହାଦେବଙ୍କ ନିକଟରେ ମହାରାଜାଙ୍କର ଅବଭୃଥ ସ୍ନାନ ପାଇଁ ଯେଉଁ ସେବକମାନେ ନିଯୁକ୍ତ ଥିଲେ, ସେମାନେ ଆସି କୃତାଞ୍ଜଳିପୂର୍ବକରେ ଜଣାଇଲେ ଯେ, ଗୋଟିଏ ମହାବୃକ୍ଷର ମୂଳଦେଶ ଅବଭୃଥ ସ୍ନାନବେଦୀ ନିକଟରେ ଉପସ୍ଥିତ ହୋଇଅଛି ଓ ଅଗ୍ରଭାଗ ସମୁଦ୍ର ମଧ୍ୟରେ ଅଛି । ବୃକ୍ଷର ସର୍ବାଙ୍ଗ ରକ୍ତବର୍ଣ୍ଣ ଓ ଶଙ୍ଖଚକ୍ର ଚିହ୍ନଦ୍ୱାରା ଶୋଭିତ । ବୃକ୍ଷର ତେଜ ନବୋଦିତ ସୂର୍ଯ୍ୟ ପରି ସମୁଦାୟ ସ୍ଥାନକୁ ଆଲୋକିତ କରୁଅଛି । ଏହା ସାଧାରଣ ବୃକ୍ଷ ନୁହେଁ । କେଉଁ ଅଜ୍ଞାତ ଦେଶରୁ ଭାସି ଆସିଅଛି । ଜଣା-ଯାଉଛି, କୌଣସି ଦେବତା ତରୁରୂପ ଧାରଣ କରିଅଛନ୍ତି । ବୃକ୍ଷର ସୁଗନ୍ଧ ମନକୁ ଆମୋଦିତ କରୁଅଛି । ଇନ୍ଦ୍ରଦ୍ୟୁମ୍ନ ବୃକ୍ଷ ସମ୍ବନ୍ଧରେ ନାରଦଙ୍କୁ କାରଣ ପଚ୍ଚାରିବାରୁ ନାରଦ କହିଲେ ଯେ, ସ୍ୱପ୍ନରେ ତୁମ୍ଭେ ଯେଉଁ ବିଷ୍ଣୁମୂର୍ତ୍ତି ଦର୍ଶନ କରିଥିଲ, ତାଙ୍କ ଅଙ୍ଗଜାତ ଲୋମ ସ୍ଖଳିତ ହୋଇ ବୃକ୍ଷରୂପରେ ଅବତୀର୍ଣ୍ଣ ହୋଇଅଛି । ଭକ୍ତବତ୍ସଳ ଭଗବାନ ସ୍ଥାଣୁ ରୂପରେ ପୃଥିବୀରେ ଆବିର୍ଭୂତ ହେବେ । ତୁମ୍ଭେ ମହୋଦଧି ତଟରେ ଅବଭୃଥ ସ୍ନାନ ସମାପନ କରି ମହାବେଦୀ ଉପରେ ନାନା ଉତ୍ସବ ସହକାରେ ବୃକ୍ଷକୁ ସ୍ଥାପନ କର ।

ଦେବର୍ଷି ନାରଦଙ୍କ ଉପଦେଶାନୁସାରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଯଜ୍ଞ ସଫଳତା ପାଇଁ ମହୋଦଧି ତଟସ୍ଥ ବେଦୀରେ ଉକ୍ତ ସ୍ନାନ ଯଥାବିଧି ସୁସମ୍ପନ୍ନ କରି ନିଜକୁ ଧନ୍ୟ ମନେକଲେ ।



## ମହାବେଦୀରେ ଅପୌରୁଷେୟ ଦାରୁ ସ୍ଥାପନ ଓ ଜଗନ୍ନାଥାଦି ଚତୁର୍ଦ୍ଧା ଦାରୁବିଗ୍ରହ ନିର୍ମାଣ

ମହାରାଜ ଇନ୍ଦ୍ରଦ୍ୟୁମ୍ନ ଓ ମହର୍ଷି ନାରଦ ମହାସମାରୋହରେ ଦାରୁରୂପୀ ଭଗବାନଙ୍କ ନିକଟକୁ ଗମନ କଲେ ଓ ଦାରୁରୂପ ବ୍ରହ୍ମ ଦର୍ଶନ କରି ଅତି ଆନନ୍ଦିତ ହୋଇଲେ । ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାବସ୍ଥାରେ ଜଗନ୍ନାଥଙ୍କ ଯେଉଁ ଚତୁର୍ଭୁଜ ମୂର୍ତ୍ତି ଦେଖିଥିଲେ, ସମ୍ପ୍ରତି ଚତୁର୍ଭୁଜ ସ୍ୱରୂପ ଚତୁଃଶାଖା ସମ୍ପନ୍ନ ବୃକ୍ଷରାଜଙ୍କୁ ଦର୍ଶନ କରି ତାଙ୍କର ନୀଳମାଧବଙ୍କ ଅଦର୍ଶନଜନିତ ଦୁଃଖ ତିରୋହିତ ହେଲା । ସେ ସାନନ୍ଦରେ ତରୁବରଙ୍କୁ ପ୍ରଣାମ କରି ବ୍ରାହ୍ମଣମାନଙ୍କ ଦ୍ୱାରା ଅଣାଇଲେ । ଶଙ୍ଖ, କାହାଳୀ ପ୍ରଭୃତି ବାଜିଲା । ଗାୟକମାନେ ହରି ସଂକୀର୍ତ୍ତନ କଲେ ଓ ସହସ୍ର ସହସ୍ର କଣ୍ଠରେ ଜୟନାଦ ଉଚ୍ଚାରିତ ହେଲା । ଆକାଶମଣ୍ଡଳରୁ ସୁଗନ୍ଧ ପୁଷ୍ପବୃଷ୍ଟି ହେଲା । ମହର୍ଷି, ଋତ୍ୱିକ, ଶ୍ରୋତ୍ରିୟ ଓ ଅନ୍ୟାନ୍ୟ ବିଦ୍ୱାନ ବ୍ରାହ୍ମଣମାନେ ସ୍ତବ କଲେ । ପରେ ବୃକ୍ଷରାଜଙ୍କୁ ସୁଗନ୍ଧଦ୍ରବ୍ୟାଦି ଦ୍ୱାରା ଅଳଂକୃତ କରି ମହାବେଦୀ ଉପରେ ସ୍ଥାପନ କଲେ । ନାରଦଙ୍କ ଉପଦେଶାନୁସାରେ ଇନ୍ଦ୍ରଦ୍ୟୁମ୍ନ ତରୁବରଙ୍କୁ ପୂଜା କରି ବିଷ୍ଣୁଙ୍କ ପ୍ରତିମା କି ପ୍ରକାରରେ ନିର୍ମିତ ହେବ ଓ କିଏ କରିବ ବୋଲି ନାରଦଙ୍କୁ ପଚାରିଲେ । ନାରଦ କହିଲେ ଯେ, ଜଗଦ୍‌ଗୁରୁଙ୍କ ମହିମା ଅଚିନ୍ତ୍ୟ । ତାହାଙ୍କ ଚେଷ୍ଟା ମଧ୍ୟ ଲୋକାତୀତ । ସେ ଚରାଚର ଜଗତର ସ୍ରଷ୍ଟା । କେଉଁ ଲୋକଦ୍ୱାରା କି ପ୍ରକାରରେ ପ୍ରତିମା ଗଠନ କରାଗଲେ ଭଗବାନ ସନ୍ତୁଷ୍ଟ ହେବେ, ତାହା ଭାବିବାର ବିଷୟ । ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ଏପରି କଥୋପକଥନ ସମୟରେ ଆକାଶବାଣୀ ଶୁଣାଗଲା :—

ଅପୌରୁଷେୟୋ ଭଗବାନ୍ ବିଶ୍ୱରୂପଧରାସ୍ଥିତଃ
ସୁଗୁପ୍ତାୟାଂ ମହାବେଦ୍ୟାଂ ସ୍ୱୟଂ ସୋଽଭିରଜ୍ୟତ ।।
ପ୍ରଚ୍ଛାଦ୍ୟତାଂ ଦିନାନ୍ୟେବ ଯାବତ ପଞ୍ଚଦଶାନିବୈ ।
ଉପସ୍ଥିତୋଽୟଂ ଯୋ ବୃଦ୍ଧଃ ଶସ୍ତ୍ରପାଣି ସ୍ତ୍ରବାର୍ଦ୍ଧକଃ ।।

ଏନ.ମନ୍ତ୍ରଃ ପ୍ରବଶେ୍ୟବ ଦ୍ୱାରଂ ବଧ୍ନନ୍ତୁ ଯତ୍ନତଃ ।
ବହୁବାଦ୍ୟାନ କୁର୍ବନ୍ତୁ ଯାବତ୍ ତଦ୍‌ଘଟନା ଭବେତ୍ ।
ଶ୍ରୁତୋହ ଘଟନା ଶବ୍ଦୋ ବାଧିର୍ଯାନ୍ଧତ୍ୱଦାୟକଃ
ନରକେ ବସତି ଚୈବ କୁର୍ଯାତ୍ ସନ୍ତାନ ନାଶନଂ ॥
ନାନ୍ୟ ପ୍ରବେଶନଂ କୁର୍ଯା ନ ପଶ୍ୟେଚ୍ଚ କଦାଚନ ।
ନୟୁକ୍ତାନ୍ୟଃ ପ୍ରପଶ୍ୟେଚ୍ଚେଦ୍ରାଜ୍ଞୋରାଷ୍ଟ୍ରସ୍ୟ ଚୈବହ ॥
ଦୃଷ୍ଟ୍ୱାପି ମହାଭୀତିରନ୍ଧତା ଚ ଯୁଗେ ଯୁଗେ ।
ତସ୍ମାନ୍ନାତେ ଯଶଂ କାର୍ଯଂ ଯାବତ୍ ପ୍ରତମନକୃତଃ ॥
ନକ୍ଷ୍ୟତ୍ତ୍ୱ ସ୍ୱୟଂ ଦେବଃ କୃତ୍ୟତ୍ୱେନ ବଦଧ୍ୟନ ।
ଯଦ୍ ଯତ୍ କାର୍ଯଂ ପ୍ରଯତ୍ନେନ ସର୍ବଲୋକ ସୁଖାବହଂ ॥
[ ଉତ୍କଳ ଖଣ୍ଡେ ]

ଅର୍ଥାତ୍—"ସେହି ଅପୌରୁଷେୟ ଭଗବାନ୍ ସ୍ୱୟଂ ନିଜ ମୂର୍ତ୍ତିର ବିଷୟ ବିସ୍ତାର କରି ଏହି ଆବରଣବେଷ୍ଟିତ ମହାବେଦୀରେ ଅବତୀର୍ଣ୍ଣ ହେବେ । ତୁମ୍ଭେମାନେ ପଞ୍ଚଦଶ ଦିବସ ପର୍ଯ୍ୟନ୍ତ ବେଦୀଗୃହକୁ ଆଚ୍ଛାଦିତ କରି ରଖିବ । ଯେଉଁ ବୃଦ୍ଧ ବର୍ଦ୍ଧକୀ ( ବଢ଼େଇ ) ହାତିହତିଆର ସହ ଉପସ୍ଥିତ ହୋଇଅଛନ୍ତି, ତାହାଙ୍କୁ ବେଦୀଗୃହ ମଧ୍ୟକୁ ନେଇ ଗୃହର ଦ୍ୱାର ଯତ୍ନସହକାରେ ବନ୍ଦ କରିବ । କାର୍ଯ୍ୟ ସମ୍ପନ୍ନ ହେବା ପର୍ଯ୍ୟନ୍ତ ବେଦୀର ବହିର୍ଭାଗରେ ନାନାବିଧ ବାଦ୍ୟ ବଜାଇବ । କାରଣ ନିର୍ମାଣ ଶବ୍ଦ କର୍ଣ୍ଣକୁହରରେ ପ୍ରବିଷ୍ଟ ହେଲେ ବଧୀରତା, ଅନ୍ଧତ୍ୱ, ନରକବାସ ଓ ସନ୍ତାନ ନାଶ ହେବ । ଉକ୍ତ ଗୃହରେ କେହି ପ୍ରବେଶ କରିବେ ନାହିଁ କି ନିର୍ମାଣ କାର୍ଯ୍ୟ ଦେଖିବେ ନାହିଁ । ନିଯୁକ୍ତ ପ୍ରହରୀ ବ୍ୟତୀତ କେହି ଏହା ଦେଖିଲେ ରାଷ୍ଟ୍ର ବା ରାଷ୍ଟ୍ରପତିର ମହାଭୟ ଉପସ୍ଥିତ ହେବ । ବିଶେଷତଃ ଦର୍ଶନକାରୀ ଲୋକ ଯୁଗଯୁଗାନ୍ତରରେ ଅନ୍ଧ ହୋଇ ରହିବ । ହେ ରାଜନ୍ ! ସ୍ୱୟଂ ସନାତନ ଦେବ ତୁମ୍ଭଙ୍କୁ ଯାହା କରିବାକୁ ଉପଦେଶ ଦେବେ ତୁମ୍ଭେ ଯତ୍ନସହକାରେ ତାହା ସମ୍ପାଦନ କରିବ ।"

ଏହି ଆକାଶବାଣୀ ଶୁଣି ବିଷ୍ଣୁଙ୍କ ଉପଦେଶ ପ୍ରତିପାଳନ ପାଇଁ ଭାବୁଥିବାବେଳେ ବୃଦ୍ଧପୁରୁଷରୂପଧାରୀ କୌଣସି ବ୍ୟକ୍ତି ଉପସ୍ଥିତ ହୋଇ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ, "ଆପଣ ସ୍ୱପ୍ନରେ ଯେଉଁ ମୂର୍ତ୍ତି ଦର୍ଶନ କରିଛନ୍ତି ଏହି ଦିବ୍ୟଦାରୁ ଦ୍ୱାରା ତାହା ମୁଁ ପ୍ରସ୍ତୁତ କରିଦେବି ।" ବୃଦ୍ଧ ପୁରୁଷରୂପୀ ସ୍ୱୟଂ ନାରାୟଣ ଏହା କହି ସେ ବେଦୀମଧ୍ୟରେ ପ୍ରବେଶ କଲେ ।

ତତ୍ପରେ ଉପରୁ ବେଦୀଗୃହର ଚତୁର୍ଦ୍ଦିଗରେ ନାନାବିଧ ବାଦ୍ୟ ବଜାଇଲେ । ତତ୍ପରେ ପରେ ଅପୂର୍ବ ଦିବ୍ୟଗନ୍ଧ ଅନୁଭୂତ ହେଲା । ସ୍ୱର୍ଗୀୟ ସଙ୍ଗୀତ ଓ ଅନ୍ୟାନ୍ୟ ମନୋହର ଗୀତଧ୍ୱନି ମଧ୍ୟ ଶୁଣାଗଲା । ଆକାଶଗଙ୍ଗାରୁ ସୂକ୍ଷ୍ମ ସୂକ୍ଷ୍ମ ବିନ୍ଦୁ ରୂପରେ ଜଳ ବୃଷ୍ଟି ହେଲା । ଅଶ୍ୱମେଧଯଜ୍ଞ ଉପଲକ୍ଷରେ ଯେଉଁ ଦେବତାମାନେ ଆସିଥିଲେ, ସେମାନେ ହରିଙ୍କ ଆବିର୍ଭାବ ଦେଖି ଉପାସନା କଲେ । କ୍ରମେ କ୍ରମେ ପଞ୍ଚଦଶ ଦିବସ ଅତୀତ ହୁଅନ୍ତେ ପୂର୍ବକଥିତ ଅନୁସାରେ ସ୍ୱୟଂ ଜଗନ୍ନାଥ ଦେବ ବଢ଼େଇ ରୂପରେ ନିଜ ମୂର୍ତ୍ତି ଗଠନ କଲେ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ଚକ୍ର ସହିତ ଦିବ୍ୟ ସିଂହାସନରେ ଆବିର୍ଭୂତ ହୋଇ ସ୍ୱୟଂ ଭଗବାନ ଉକ୍ତ ଚତୁଷ୍ଟୟ ମୂର୍ତ୍ତିରେ ପ୍ରକାଶିତ ହେଲେ ।

---

## ଜଗନ୍ନାଥାଦି ମୂର୍ତ୍ତି ଚତୁଷ୍ଟୟଙ୍କ ସମ୍ବନ୍ଧରେ ଆକାଶବାଣୀ

ପୁଣି ଲୋକ କଲ୍ୟାଣ ପାଇଁ ନିମ୍ନପ୍ରକାରେ ଆକାଶବାଣୀ ଶୁଣାଗଲା :—

"ସନ୍ନିବେଶ୍ୟାଦ୍ୟ ସ୍ୱବ୍ରୁବଂ ନୃପତେ ପ୍ରତିମା ସ୍ତ୍ୱିମାଃ ।
ସ୍ୱଂ ସ୍ୱଂ ବର୍ଣ୍ଣଂ ପ୍ରାପୟାଶୁ ବର୍ଣ୍ଣକୈଶ୍ଚିତ୍ର କର୍ମଣା ॥
ନୀଳାଭଶ୍ୟାମଳଂ ବିଷ୍ଣୁଂ ଶଙ୍ଖେନ୍ଦୁ-ଧବଳଂ ବଳଂ ।
ରକ୍ତଂ ସୁଦର୍ଶନଂ ଚକ୍ରଂ ସୁଭଦ୍ରାଂ କୁଙ୍କୁମାରୁଣାଂ ॥
ନାନାଲଙ୍କାର ରୁଚିରାଂ ନାନାଭଙ୍ଗି ବିଭୂଷିତାଃ ।
ଅମୂର୍ତ୍ତୀରୁ ସ୍ୱରୂପେଣ ଦୃଷ୍ଟାଃସ୍ୟୁଃ ପାପହେତବଃ ॥
ଗୋପନୀୟାଃ ପ୍ରଯତ୍ନେନ ପଟ୍ଟ ନିର୍ଯ୍ୟାସ ବନ୍ଧନୈଃ ।
ତସ୍ମାତ୍ ପ୍ରଥମ ମେବୈତାଂ ସ୍ତ୍ରଷ୍ଟୈରେବାସ୍ୟ ବଲ୍କଲୈଃ ॥
ଶିଳ୍ପିଭିଃ ଚର୍ମକୃଶଲୈଃ କୃତ୍ରମାଚ୍ଛାଦୟାଗତଃ ।
ବର୍ଷେ ବର୍ଷେ ଚ ସଂସ୍କାର୍ଯ୍ୟାଃ ପୂର୍ବ ସଂସ୍କାର ମୋଚନାତ୍ ॥
ଲତେ ବନ୍ଧନ ଲେପନ୍ତୁ ସ ତୁ ଦିବ୍ୟାସ୍ଥିରନ୍ତନଃ ।
ପ୍ରମାଦାତ୍ ଯଦି ତତ୍ ଲେପମପନେୟତ କଶ୍ଚନ ॥
ବାଞ୍ଛ୍ୟତେ ତସ୍ୟ ନରକେ ଚିରଂବାସଃ ପ୍ରଜାସ୍ୱତେ ।
ଧ୍ୱଂସଂ ମରକଂ ବ୍ରଗେ୍ୟ ସନ୍ତତି ଶ୍ଚାସ୍ୟ ହ୍ରୀୟତେ ॥

ନୈଷିତବ୍ୟା ତ୍ୱୟା ରାଜନ୍ କଦାଚିଦପବାରଣା ।
ମନ୍ତ୍ରଣେୟ ଶ୍ଚାପି ରାଜେନ୍ଦ୍ର ଦୃଷ୍ଟାଃସ୍ୟୁର୍ଭିନ୍ନ ଦେହତଃ ॥
ତସ୍ମାତ୍ ସୁଚିତ୍ରା ଦ୍ରଷ୍ଟବ୍ୟା ବହୁଲେପ-ବଲେପିତାଃ ।
ସୁଚିତ୍ରଂ ସୁଶ୍ରୀକାଙ୍କ୍ଷଂ ସୁବିଲାସଂ ସୁବିଭ୍ରମଂ ॥
ଦୃଷ୍ଟ୍ୱା ବିମୂଚ୍ୟତେ ପାପୈଃ କଲ୍ପକୋଟି ସମୁଦ୍ଭବୈଃ ।
ସୁଚିତ୍ରାନ୍ କୁରୁ ରାଜେନ୍ଦ୍ର ଚିତ୍ରାନ୍ କାମାନବାପ୍ସ୍ୟସି ॥
ଆବିର୍ଭୂବ ଭଗବାଂସ୍ତବାନୁ ଗ୍ରହକାମ୍ୟୟା ।
ଏତଦ୍ ପ୍ରସାଦାତ୍ ଜନ୍ତୂନାଂ ଚତୁର୍ବର୍ଗଂ ପ୍ରଦାସ୍ୟତି ॥
ନୀଳାଦ୍ରୌ କଲ୍ପବୃକ୍ଷସ୍ୟ ବାୟବ୍ୟାଂ ଶତହସ୍ତତଃ ।
ପ୍ରଦେଶେତୁ ମହତ୍ସ୍ଥାନେ ପ୍ରାସାଦଂ ସୁଦୃଢ଼ାନ୍ୱିତଂ ॥
ତତ୍ପରେ ନରସିଂହସ୍ୟ ସହସ୍ର କର ପୂଜିତଂ ।
କାରୟିତ୍ୱା ପ୍ରତିଷ୍ଠାପ୍ୟ ତଦ୍ଦ୍ରୋଣଂ ବଦ୍ଧବେଶକ୍ରୂ ॥
ସୁପ୍ରଷ୍ଠିତଂ ପଦ୍ମତେ଼ସ୍ମିନ୍ ଯୋଽଭ୍ୟର୍ଚ୍ଚୟିତ ମାଧବଂ ।
ନାମ୍ନା ବିଶ୍ୱାବସୁ ର୍ନାମ ଶବରୋ ବୈଷ୍ଣବୋତ୍ତମଃ ॥
ପୁରୋଧସଃ ସଖ୍ୟ ମାସୀତ୍ତେନ ସାର୍ଦ୍ଧଂ ସୁରାଚତେ ।
ତୟୋଃ ସନ୍ତତି ରେବାସ୍ୟ ଲେପ ସଂସ୍କାର କର୍ମଣି ॥
ନିଯୁଜ୍ୟତାଂ ମହାରାଜ ଭବତ୍ୟେ-ଷୁସୁବେଶ୍ଚ ।

[ ଉତ୍କଳ ଖଣ୍ଡେ ]

ଅର୍ଥାତ୍ :—'ହେ ରାଜନ୍ ! ତୁମ୍ଭେ ଏହି ପ୍ରତିମାମାନଙ୍କୁ ପଟ୍ଟବସ୍ତ୍ରରେ ଦୃଢ଼ଭାବରେ ଆବୃତ କର । ଜଗନ୍ନାଥଙ୍କୁ ନୀଳମେଘ ପରି ଶ୍ୟାମଳ, ବଳଦେବଙ୍କୁ ଶଙ୍ଖ ବା ଚନ୍ଦ୍ରପରି ଧବଳ, ସୁଭଦ୍ରାଙ୍କୁ କୁଙ୍କୁମ ପରି ଅରୁଣ ଓ ଚକ୍ରକୁ ରକ୍ତବର୍ଣ୍ଣ କରି ଚିତ୍ରକାରଙ୍କ ଦ୍ୱାରା ରଞ୍ଜିତ କର । ନାନାଲଙ୍କାରରେ ମଧ୍ୟ ଅଳଙ୍କୃତ କର । ଏହି ପ୍ରତିମା ଦାରୁରୂପରେ ଦୃଷ୍ଟ ହେଲେ ପାପ ଘଟିବ । ଅତଏବ ଯତ୍ନସହକାରେ ପଟ୍ଟବସ୍ତ୍ର ଓ କର୍ପାସ ଦ୍ୱାରା ମୂର୍ତ୍ତିମାନଙ୍କ ସମସ୍ତ ଅବୟବକୁ ଆଚ୍ଛାଦନ କରି ସୁନ୍ଦରରୂପେ ସୁସଜ୍ଜିତ କର । ପ୍ରତିବର୍ଷ ବସ୍ତ୍ରାଦିର ସଂସ୍କାର କରି ନୂତନ ବସ୍ତ୍ରାଦି ସନ୍ନିବେଶ କରିବ । କେହି କୌଣସି ପ୍ରତିମାର ଗାତ୍ରରୁ ତାହାଙ୍କର ଲେପାଦି ପୃଥକ୍ କଲେ ବା ଲେପ ନ ଥିବା ମୂର୍ତ୍ତିଙ୍କୁ ଦର୍ଶନ କଲେ ଚିରକାଳ ନରକରେ ବାସ କରିବେ ଓ ତାହାଙ୍କ ସନ୍ତାନ-ସନ୍ତତି ନଷ୍ଟ ହେବେ । ତୁମ୍ଭେ ମଧ୍ୟ ଏ ମୂର୍ତ୍ତି ଚତୁଷ୍ଟୟଙ୍କୁ ଆବରଣ ଶୂନ୍ୟ କରି କଦାପି ଦେଖିବ ନାହିଁ । ଭଗବାନ ସୁଚିତ୍ରିତ ଓ ସୁନ୍ଦର ଅବସ୍ଥାରେ ଦୃଷ୍ଟହେଲେ

ଦର୍ଶକର କୋଟି କଳ୍ପଜାତ ପାପରାଶି ଧ୍ୱଂସ ପାଏ । ସମ୍ପ୍ରତି ନୀଳପର୍ବତର ଉପରଭାଗରେ ଯେଉଁ କଳ୍ପବୃକ୍ଷ ଅଛି, ତାହାର ବାୟୁକୋଣର ଏକଶତ ହସ୍ତ ଦୂରରେ ନରସିଂହ ଦେବ ପ୍ରତିଷ୍ଠିତ ଅଛନ୍ତି । ତାଙ୍କର ଉତ୍ତରାଂଶରେ ଯେଉଁ ପ୍ରଶସ୍ତ ସ୍ଥାନ ଅଛି, ସେହିଠାରେ ସହସ୍ର ହସ୍ତ ଉଚ୍ଚ ଓ ତାହାର ଉପଯୋଗୀ ଆୟତନ ଦ୍ୱାରା ଏକ ସୁଦୃଢ଼ ପ୍ରାସାଦ ନିର୍ମାଣ କରି ଏହି ମୂର୍ତ୍ତିମାନଙ୍କୁ ସ୍ଥାପନ କର । ବିଶ୍ୱାବସୁ ଶବର ପୂର୍ବେ ମାଧବଙ୍କୁ ନିତ୍ୟ ଅର୍ଚ୍ଚନା କରୁଥିଲେ । ତାଙ୍କ ସହିତ ଭୃଗୁ ପୁରୋହିତଙ୍କର ମଧ୍ୟ ବନ୍ଧୁତା ଥିଲା । ଏ ବ୍ୟକ୍ତିଦ୍ୱୟଙ୍କର ବଂଶଜାତ-ସନ୍ତାନମାନେ ଏହି ପ୍ରତିମା-ମାନଙ୍କର ଲେପ ସଂସ୍କାର କର୍ମରେ ଓ ଭବିଷ୍ୟତ୍ ଯଜ୍ଞୀୟ ଉତ୍ସବାଦି କାର୍ଯ୍ୟରେ ନିଯୁକ୍ତ ହେବେ ।"

ମହାରାଜ ଇନ୍ଦ୍ରଦ୍ୟୁମ୍ନ ତଦନୁସାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଚକ୍ରଙ୍କୁ ପଟ୍ଟବସ୍ତ୍ର ଓ ନିର୍ଯ୍ୟାସଦ୍ୱାରା ସୁଦୃଢ଼ ଆବରଣ କରାଇ ମୂର୍ତ୍ତି ଚତୁଷ୍ଟୟଙ୍କୁ ସୁବିଜ୍ଞ ଚିତ୍ରକାର ଦ୍ୱାରା ସୁଚିତ୍ରିତ କରାଇଲେ । ପରେ ମହାବେଦୀକୁ ଯାଇ ତାହାର ଦ୍ୱାର ଉନ୍ମୁକ୍ତ କରାଇଲେ ।

ରତ୍ନସିଂହାସନରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ବିଷ୍ଣୁଙ୍କ ଚିତ୍ର ବିରାଜିତ ଥିବାର ସମସ୍ତେ ଦେଖିଲେ । ଶ୍ରୀଜଗନ୍ନାଥଙ୍କ ବକ୍ଷସ୍ଥଳ ଉନ୍ନତ ଓ ଦିବ୍ୟ ଅଳଙ୍କାର ଦ୍ୱାରା ଭୂଷିତ ହୋଇଅଛି; ମୁଖମଣ୍ଡଳ ଈଷଦ୍ହାସ୍ୟ ଧାରଣ କରୁଅଛି । ନୟନଦ୍ୱୟ ପ୍ରଫୁଲ୍ଲ ଓ ଶ୍ୱେତପଦ୍ମପରି ଶୋଭା ପାଉଅଛି । ଅଧର ଯୁଗଳ ହାସ୍ୟର ଅନୁରାଗରେ ରକ୍ତିମ ହୋଇଅଛି । ଦେହ ନୀଳମେଘ ସଦୃଶ ଦେଖାଯାଉଅଛି । ବଳଦେବଙ୍କର ମୁଖପଦ୍ମ ଅଟ୍ଟହାସ ଦ୍ୱାରା ଶୋଭିତ ଓ ନାଗରାଜଙ୍କ ଫଣାମାନ ଛତ୍ରପରି ରହିଅଛି । ବକ୍ଷସ୍ଥଳ କୋମଳ ଓ ଉନ୍ନତ, ପୃଷ୍ଠଦେଶ କିଞ୍ଚିତ୍ ଅବନତ । ଦେହର ଅପରଭାଗ କୁଣ୍ଡଳାକାର । ଗଳଦେଶରେ ବନମାଳା ଓ ହସ୍ତରେ ହଳ, ଚକ୍ର, ପଦ୍ମ ଓ ମୂଷଳ ଶୋଭା ପାଉଅଛି । ସେ ହାର, କୁଣ୍ଡଳ, କେୟୂର କିରୀଟ ଓ ମୁକୁଟ ଅଳଙ୍କାର ଧାରଣ କରି ଅଛନ୍ତି । ଜଗନ୍ନାଥ ଓ ବଳଭଦ୍ରଙ୍କ ମଧ୍ୟଭାଗରେ ଭଦ୍ରରୂପିଣୀ ସୁଭଦ୍ରା ରହିଅଛନ୍ତି । ମୁଖମଣ୍ଡଳ ପଦ୍ମପରି ବିକଶିତ, ହସ୍ତଦ୍ୱୟରେ ବର, ପଦ୍ମ ଓ ଅଭୟ ଧାରଣ କରିଅଛନ୍ତି । ସେ ସାକ୍ଷାତ୍ ଲକ୍ଷ୍ମୀ ଅଟନ୍ତି । ଜଗନ୍ନାଥଙ୍କ ବାମପାର୍ଶ୍ୱରେ

ଦାରୁର ଶାଖାଗ୍ର ନିର୍ମିତ ଚତୁ ନବୋଦିତ ସୂର୍ଯ୍ୟପରି ଗ୍ରୀକ୍ଷଣକାପୁ ଦେଖା ପାଉଅଛନ୍ତି । ଇନ୍ଦ୍ରଦ୍ୟୁମ୍ନ ଏହି ଦିବ୍ୟ ମୂର୍ତ୍ତିମାନଙ୍କୁ ଦର୍ଶନ କରି ଆନନ୍ଦ-ସାଗରରେ ନିମଗ୍ନ ହେଲେ ଏବଂ କୃତାଞ୍ଜଳିପୂର୍ବକରେ ସମ୍ମୁଖରେ ଦଣ୍ଡାୟମାନ ହେଲେ । ତତ୍ପରେ ମହର୍ଷି ନାରଦ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ, "ତୁମ୍ଭେ ଜଗତରେ ଏକମାତ୍ର ଭାଗ୍ୟବାନ୍ । ଯୋଗୀମାନେ ଯାହାଙ୍କ ଦର୍ଶନ ପାଇଁ ନିଜେ ସଂଯତ ହୋଇ ଯୋଗାଭ୍ୟାସ କରନ୍ତି, ସେହି ଭଗବାନ୍ ତୁମ୍ଭଙ୍କୁ ଦାରୁବ୍ରହ୍ମରୂପରେ ଦର୍ଶନ ଦେଲେ । ତୁମ୍ଭେ ଏହି କରୁଣାସାଗରଙ୍କୁ ସ୍ତବ କଲେ ତୁମ୍ଭର ସକଳ କାମନା ପୂର୍ଣ୍ଣହେବ ।"

---

## ଜଗନ୍ନାଥାଦି ଚତୁର୍ଦ୍ଧା ଦାରୁମୂର୍ତ୍ତିଙ୍କ ପୂଜା ଓ ଇନ୍ଦ୍ରଦ୍ୟୁମ୍ନ ସରୋବର କଥା

ମହାରାଜ ଇନ୍ଦ୍ରଦ୍ୟୁମ୍ନ ମହର୍ଷି ନାରଦଙ୍କ ଉପଦେଶାନୁସାରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଚକ୍ରଙ୍କୁ ସ୍ତବ କଲେ, "ହେ ପ୍ରଭୋ ! ଆପଣ ଅନାଥବନ୍ଧୁ । ମୁଁ ସଂସାର-ସାଗରରେ ବୁଡ଼ି ରହିଅଛି । ଦୟାକରି ମୋତେ ପରିତ୍ରାଣ କର ।" ପରେ ତାଙ୍କର ସଦାଚାରସମ୍ପନ୍ନ ପୁରୋହିତଙ୍କୁ ଭଗବାନଙ୍କ ପୂଜା ପାଇଁ ଉପଚାର ଦ୍ରବ୍ୟ ଆଣି ସେମାନଙ୍କ ସକାଶେ ନିବେଦନ କଲେ । ସ୍ୱୟଂ ଇନ୍ଦ୍ରଦ୍ୟୁମ୍ନ ଯଥାବିଧି ମନ୍ତ୍ରାଦି ପାଠ କରି ପୁରୁଷସୂକ୍ତ ମହାମନ୍ତ୍ର ଦ୍ୱାରା ନାରାୟଣଙ୍କୁ, 'ଓଁ ନମୋ ଭଗବତେ ବାସୁଦେବାୟ' ଏହି ଦ୍ୱାଦଶ ଅକ୍ଷରରେ ବଳଦେବଙ୍କୁ, ଦେବୀସୂକ୍ତ ମନ୍ତ୍ରଦ୍ୱାରା ସୁଭଦ୍ରାଙ୍କୁ ଓ ସୌଦର୍ଶନୀସୂକ୍ତ ମନ୍ତ୍ର ଦ୍ୱାରା ସୁଦର୍ଶନଚକ୍ରଙ୍କୁ ପୂଜା କଲେ । ତତ୍ପରେ ଦେବତାମାନଙ୍କ ପ୍ରୀତି ନିମିତ୍ତ ମୁଖ୍ୟ ମୁଖ୍ୟ ବ୍ରାହ୍ମଣମାନଙ୍କୁ ସାତ୍ତ୍ୱିକଭାବରେ ବହୁ ଦାନ ଦେଲେ । ସେହି ସମୟରେ ତୁଳାପୁରୁଷ ଦାନ ଓ ଅଶ୍ୱମେଧଯଜ୍ଞର ଅଙ୍ଗୀଭୂତ କୋଟି କୋଟି ଗୋମାନଙ୍କୁ ଅଳଙ୍କୃତ କରି ଭୂରି ଭୂରି ଦକ୍ଷିଣାସହ ଦାନ କଲେ । ଉକ୍ତ ଗୋମାନଙ୍କ ଖୁରା ଦ୍ୱାରା ଯେଉଁ ଗର୍ତ୍ତ ହେଲା, ତାହା ଦାନକାଳୀନ ହସ୍ତଚ୍ୟୁତ ଜଳଦ୍ୱାରା ପରିପୂର୍ଣ୍ଣ ହୋଇ ମହାତୀର୍ଥରୂପେ ପରିଣତ ହୋଇଅଛି । ସେହି ତୀର୍ଥରେ ସ୍ନାନ ଓ ଦେବତା ପିତୃମାନଙ୍କର ତର୍ପଣ ଯଥାବିଧି ସମାପନ କଲେ

ମାନବଗଣ ସହସ୍ର ଯଜ୍ଞର ଫଳଭାଗୀ ହୁଅନ୍ତି । ଏହି ସରୋବର ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ନାମାନୁସାରେ "ଇନ୍ଦ୍ରଦ୍ୟୁମ୍ନ ସରୋବର" ନାମରେ ଖ୍ୟାତିଲାଭ କରିଅଛି । ଏଠାରେ ପିତୃଗଣଙ୍କ ଉଦ୍ଦେଶ୍ୟରେ ପିଣ୍ଡଦାନ କଲେ କୁଳର ଊର୍ଦ୍ଧ୍ୱତନ ଏକବିଂଶତି ପୁରୁଷଙ୍କୁ ଉଦ୍ଧାର ପୂର୍ବକ ମାନବ ସ୍ୱୟଂ ବ୍ରହ୍ମଲୋକକୁ ଗମନ କରେ ।

## ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଜଗନ୍ନାଥଙ୍କ ପ୍ରାସାଦନିର୍ମାଣ କଥା

ତଦନନ୍ତର ଇନ୍ଦ୍ରଦ୍ୟୁମ୍ନ ନୀଳାଚଳ ଶିଖରରେ ଦାରୁବ୍ରହ୍ମଙ୍କ ପ୍ରାସାଦ ନିର୍ମାଣ ପାଇଁ ସେଠାକୁ ଗମନ କଲେ । ସୁନକ୍ଷତ୍ର ଓ ସୁମୁହୂର୍ତ୍ତ ନିର୍ଣ୍ଣୟ କରି ବ୍ରାହ୍ମଣମାନଙ୍କୁ ଅର୍ଚ୍ଚନା କଲେ ଏବଂ କର୍ମାଙ୍ଗ ସ୍ୱସ୍ତି ବାଚନ କଲେ । ଜଗନ୍ନାଥଙ୍କୁ ସ୍ମରଣ କରି ତାହାଙ୍କ ଉଦ୍ଦେଶ୍ୟରେ ପ୍ରାସାଦ ଗୃହସ୍ଥଳରେ ଅର୍ଘ୍ୟ ପ୍ରଦାନ କଲେ । ଚନ୍ଦ୍ର ସୂର୍ଯ୍ୟ ଥିବା ପର୍ଯ୍ୟନ୍ତ ଅର୍ଥାତ ମହାପ୍ରଳୟ ପର୍ଯ୍ୟନ୍ତ ଏହି ଗୃହର ଅବସ୍ଥିତି ନିମନ୍ତେ ବସୁଧାଦେବୀଙ୍କୁ ପ୍ରାର୍ଥନା କରି ସେଠାରେ ବାସ୍ତୁଦୋଷ ଉପଶମ ପାଇଁ ବାସ୍ତୁ ଯୋଗନିଦ୍ରା ସମ୍ପନ୍ନ କଲେ । ଶିଳ୍ପୀମାନଙ୍କୁ ପାରିତୋଷିକାଦି ଦ୍ୱାରା ସନ୍ତୁଷ୍ଟ କଲେ । ପ୍ରଭୂତ ଗୀତବାଦ୍ୟାଦି ଦ୍ୱାରା ମହୋତ୍ସବ ଅନୁଷ୍ଠିତ ହେଲା । ଅନାଥ ଓ ବିପନ୍ନ ଲୋକଙ୍କୁ ବହୁତ ପଦାର୍ଥ ପ୍ରଦାନ କରାଗଲା । ନାନା ଦେଶରୁ ଆସିଥିବା ରାଜାମାନେ ହରିଙ୍କ ଅବତାର ଦର୍ଶନ କରି କୃତାର୍ଥ ହେଲେ । ସେମାନଙ୍କୁ ବହୁ ସମ୍ମାନ ସହିତ ବିଦାୟ କରାଗଲା ।

ପରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ପ୍ରାସାଦ ନିର୍ମାଣ ଉଦ୍ଦେଶ୍ୟରେ ପ୍ରସ୍ତର ଖଣ୍ଡ ଖଣ୍ଡ କାଟିବା ପାଇଁ ପ୍ରଚୁର ଅର୍ଥ ବ୍ୟୟ କରିଥିଲେ । ନାନାଦେଶରୁ ସମ୍ପତ୍ତିଶାଳୀ ରାଜାମାନଙ୍କୁ ଆବାହନ କରି କହିଲେ ଯେ ପୁରୁଷକାର ଦ୍ୱାରା ଅଷ୍ଟାଦଶ ଦ୍ୱୀପରୁ ସେ ଯେଉଁ ଧନ ଅର୍ଜନ କରି ଅଛନ୍ତି, ତାହା ଏହି ପ୍ରାସାଦ ନିର୍ମାଣ କାର୍ଯ୍ୟରେ ବ୍ୟୟିତ ହେବ । ହରିଙ୍କ ପ୍ରିୟତମା ମହାଲକ୍ଷ୍ମୀଙ୍କ ଅନୁଗ୍ରହରୁ ଯେଉଁ ଧନ ସମ୍ପତ୍ତି ହୋଇଅଛି, ତାହା ତାଙ୍କ ପ୍ରାସାଦ ନିର୍ମାଣ କାର୍ଯ୍ୟରେ ବ୍ୟୟ କରି ପାରିଲେ ଜୀବନ ଧନ୍ୟ ହେବ ।

## ଋଗ୍‌ବେଦୀୟ ବ୍ରାହ୍ମଣଙ୍କ ବେଦବ୍ୟାଖ୍ୟା କଥା ଓ ନାରଦଙ୍କ ସମର୍ଥନ

ଏହିପରି କଥୋପକଥନ ହେଉଥିବା ସମୟରେ କୌଣସି ଋକ୍‌ବେଦପରାୟଣ ଜ୍ଞାନଶୀଳ ବ୍ରାହ୍ମଣ ଉପସ୍ଥିତ ହୋଇ ମହାରାଜାଙ୍କୁ କହିଲେ, "ସ୍ୱୟଂ ଭଗବାନ ପୃଥିବୀରେ ଦାରୁମୂର୍ତ୍ତିରେ ଆବିର୍ଭୂତ ହୋଇଅଛନ୍ତି । ବେଦରେ କଥିତ ଅଛି ଯେ:—

"ଅଦୌ ଯଦ୍‌ଦାରୁ ପବତେ ସିନ୍ଧୋଃପାରେ ଅପୌରୁଷଂ ।
ତଥା ଲଭସ୍ୱ ଦୁର୍ଦ୍ଦନୋ ତେନ ଗଚ୍ଛ ପରଂ ସ୍ଥଳଂ ॥"

ଏହାର ବ୍ୟାଖ୍ୟା ସାଂଖ୍ୟାୟନ ଭାଷ୍ୟରେ ଯାହା ଅଛି, ତାହାର ଉତ୍କଳାନୁବାଦ ଏହି ଯେ, ଉତ୍ତମ ପ୍ରଦେଶରେ ପୁରୁଷଦ୍ୱାରା ନିର୍ମାଣ ନ ହୋଇଥିବା ଯେଉଁ ଦାରୁମୟ ଶରୀର ସମୁଦ୍ରତଟରେ ବିରାଜିତ ଅଛି, ସେହି ଅବିନାଶୀ ଦେବଙ୍କୁ ଉପାସନା କରି ହେ ତାତ ! ତୁମ୍ଭେ ପରମ ବ୍ରହ୍ମଲୋକକୁ ଗମନ କର । ସାମଗାୟନରେ ମଧ୍ୟ ପ୍ରଭୁ ବେଦବେଦାନ୍ତ ବେଦ୍ୟ ପୁରୁଷ ବୋଲି କଥିତ ହୋଇଅଛନ୍ତି । ଏହାଙ୍କୁ ସାମାନ୍ୟ ପ୍ରତିମା ବୋଲି ମଣିବ ନାହିଁ । ସେ ମନୁଷ୍ୟମାନଙ୍କୁ ମୁକ୍ତି ପ୍ରଦାନ କରୁଥିବାରୁ ତାଙ୍କର ଏହି ପ୍ରତିମା ଦର୍ଶନମାତ୍ରେ ଅତି ଉତ୍କଟ ତମୋଗୁଣରାଶି ନଷ୍ଟ ହୁଏ । ବେଦରେ ଜଗନ୍ନାଥଙ୍କ ଦ୍ରୁତମୂର୍ତ୍ତିର ଯେଉଁ ବିଜ୍ଞାପକ ଶ୍ରୁତି ସମୂହ ଥିଲା, ଏହି ଦାରୁବିଗ୍ରହ ଆମ୍ଭର ପ୍ରତ୍ୟକ୍ଷୀଭୂତ ହେବାରୁ ସେହି ବେଦବାକ୍ୟ ଏହିଠାରେ ପ୍ରମାଣିତ ହେଲା । ଅନ୍ୟ କ୍ଷେତ୍ରମାନଙ୍କରେ ଭଗବାନ ମନୁଷ୍ୟମାନଙ୍କ ସୁଦୂର ଲଭ୍ୟ ହୋଇ ରହିଥାନ୍ତି । ମାତ୍ର ଏହି ନିଜ କ୍ଷେତ୍ରଧାମରେ ମୁକ୍ତିଦାତା ହୋଇ (ଶାଶ୍ୱତରୂପେ) ବିରାଜିତ ଅଛନ୍ତି । ଏଣୁ ତୁମ୍ଭେ ନିଜ ବଳ ଓ ପୌରୁଷ ସହିତ ଏହି ସ୍ଥଳରେ ରହି ବିଷ୍ଣୁଙ୍କୁ ସାଙ୍ଗୋପାଙ୍ଗରେ ଭଜନ କର ।

ବ୍ରାହ୍ମଣଙ୍କ ଏହି କଥା ଶ୍ରବଣ କରି ନାରଦ କହିଲେ, "ଏ କଥା ସତ୍ୟ । ସୃଷ୍ଟିର ପ୍ରାରମ୍ଭରେ ବ୍ରହ୍ମାଙ୍କ ନିଃଶ୍ୱାସରୁ ବେଦମାନେ ଆବିର୍ଭୂତ ହୋଇଥିଲେ । ତନ୍ମଧ୍ୟରେ ଦାରୁବ୍ରହ୍ମ ସମ୍ବନ୍ଧୀୟ ଏହି ଉପନିଷଦର ଅର୍ଥଟି ସମ୍ପ୍ରତି ବ୍ୟକ୍ତଭାବେ ପ୍ରକାଶିତ ହେଲା । ପଦ୍ମଯୋନି ବ୍ରହ୍ମା

ମଧ୍ୟ ଏଥିପୂର୍ବେ ଏହି ଅର୍ଥଟି ଜାଣିଥିଲେ । ତାହାଙ୍କ ମୁଖରୁ ମୁଁ ଏହା ଶୁଣିଅଛି ଏବଂ ତାହାଙ୍କ ଅନୁମତିକ୍ରମେ ତୁମ୍ଭର ଏହି ଅଭିଳଷିତ କାର୍ଯ୍ୟ ସମ୍ପନ୍ନ କଲି ।

---

## ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ବ୍ରହ୍ମଲୋକ ଯାତ୍ରାର ଉଦ୍‌ଯୋଗ ଓ ମନ୍ଦିର ନିର୍ମାଣ କଥା

ତତ୍ପରେ ନାରଦ ପ୍ରଭୁଙ୍କ ଆବିର୍ଭାବ ବିଷୟ ବ୍ରହ୍ମାଙ୍କୁ ଜଣାଇବା ପାଇଁ ଉଦ୍ୟତ ହେଲେ । ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ବ୍ରହ୍ମାଙ୍କ ଦ୍ୱାରା ଦାରୁ ବିଗ୍ରହ ପ୍ରତିଷ୍ଠା କରିବାକୁ ଇଚ୍ଛା ପ୍ରକାଶ କଲେ ଏବଂ ବ୍ରହ୍ମାଙ୍କ ନିକଟକୁ ନାରଦଙ୍କ ସହିତ ଯିବାପାଇଁ ତାହାଙ୍କୁ ସବିନୟେ ପ୍ରାର୍ଥନା କଲେ । ଏହି ପ୍ରାସାଦର ଗର୍ଭ-ପ୍ରତିଷ୍ଠା କାର୍ଯ୍ୟ ସମାପ୍ତ କରିବା ପରେ ଉଭୟେ ବ୍ରହ୍ମଲୋକକୁ ଯିବା ବୋଲି ନାରଦ ରାଜାଙ୍କୁ କହିଲେ । ତହୁଁ ଇନ୍ଦ୍ରଦ୍ୟୁମ୍ନ ପ୍ରସ୍ତର ଖଣ୍ଡଦ୍ୱାରା ଦେବଗୃହ ନିର୍ମାଣ କାର୍ଯ୍ୟପାଇଁ ଶିଳ୍ପବ୍ୟବସାୟୀମାନଙ୍କୁ ଧନଦାନପୂର୍ବକ ସମ୍ମାନ ସହିତ ନିଯୁକ୍ତ କଲେ । ପ୍ରାସାଦଟି ଦିନକୁ ଦିନ ସୁଗଠିତ ଓ ପରିବର୍ଦ୍ଧିତ ହେଲା । ଏହା ଏତେ ଉଚ୍ଚ ହେଲା ଯେ, ଅଳ୍ପ ସମୟରେ ତାହାର ସମସ୍ତ ଅବୟବ ପରିଲକ୍ଷିତ ହୋଇ ପାରୁ ନ ଥିଲା । ସେତେବେଳେ ଭାରତବର୍ଷରେ ଯେଉଁ ରାଜାମାନେ ଥିଲେ, ସେ ସମସ୍ତଙ୍କୁ ଇନ୍ଦ୍ରଦ୍ୟୁମ୍ନ ଏହି ପ୍ରାସାଦ ନିର୍ମାଣକାର୍ଯ୍ୟର ତତ୍ତ୍ୱ ନେବା ପାଇଁ ନିଯୁକ୍ତ କରିଥିଲେ ଏବଂ ସେମାନେ ପରସ୍ପର ସମ୍ମିଳିତ ହୋଇ ସମସ୍ତ କାର୍ଯ୍ୟ ସୁରୁଚିରୂପେ ସମ୍ପନ୍ନ କରୁଥିଲେ । ମନ୍ଦିରର ସ୍ଥାନେ ସ୍ଥାନେ କାଞ୍ଚନ ଏବଂ ରତ୍ନରାଜି ସନ୍ନିବେଶିତ ଥିବାରୁ ଉଜ୍ଜ୍ୱଳ ଦେଖାଯାଉଥିଲା । କୌଣସି କୌଣସି ସ୍ଥାନରେ ନୀଳକାନ୍ତମଣିର ସନ୍ନିବେଶ ଥିବାରୁ ନୀଳମେଘ ପରି ଶୋଭା ପାଉଥିଲା ଏବଂ ତଳଭାଗ ସ୍ଫଟିକ ପଥର ଦ୍ୱାରା ନିର୍ମିତ ହୋଇଥିଲା । ଏହିପରି ମନୋହର ପ୍ରାସାଦ ସୁସମ୍ପନ୍ନ ହେଉଥିବାରୁ ଇନ୍ଦ୍ରଦ୍ୟୁମ୍ନ ତାହାର ଗର୍ଭ ପ୍ରତିଷ୍ଠା କଲେ ଓ ବଜ୍ରପାତ ପ୍ରଭୃତି ନିବାରଣ ପାଇଁ ପ୍ରାସାଦରେ ଶିଳ୍ପଶାସ୍ତ୍ରୋକ୍ତ ଅନୁସାରେ ସ୍ତ୍ରୀ ଓ ପୁରୁଷ ଆକୃତି ଗଠନ ପାଇଁ ମଣିବିନ୍ୟାସ କଲେ । ପୃଥିବୀ ମଧ୍ୟରେ ଏପରି ଦେବଗୃହ କେବେ ଦୃଷ୍ଟ ହୋଇ ନ ଥିଲା ବୋଲି ଦେବତାମାନେ କଥୋପକଥନ

କରୁଥିଲେ । ମହର୍ଷି ନାରଦ ରାଜାଙ୍କୁ କହିଲେ, "ତୁମ୍ଭ ଓ ମୋ ମଧ୍ୟରେ କିଛି ପ୍ରଭେଦ ନାହିଁ । ପ୍ରଭୁ ତୁମ୍ଭ ପାଇଁ ଆବିର୍ଭୂତ ହୋଇ ଅଛନ୍ତି । ତାଙ୍କ ପଦାରବିନ୍ଦରେ ତୁମ୍ଭର ଅନନ୍ୟ ଭକ୍ତି ଜାତ ହୋଇଅଛି । ଏହା ବ୍ୟତୀତ ପୁରୁଷର ଅଧିକ ଭାଗ୍ୟ ଆଉ କିଛି ନାହିଁ । ତୁମ୍ଭେ ସମ୍ପ୍ରତି ଜୀବନ୍ମୁକ୍ତ ହୋଇଅଛ । ଯଦି ତୁମ୍ଭେ ବ୍ରହ୍ମାଙ୍କୁ ଦର୍ଶନ କରିବାକୁ ଇଚ୍ଛାକର, ତାହାହେଲେ ବ୍ରହ୍ମଲୋକକୁ ଗଲେ ସେ ତୁମ୍ଭଙ୍କୁ ଅଭୀଷ୍ଟ ବର ପ୍ରଦାନ କରିବେ ଏବଂ ଭଗବାନଙ୍କ ମହୋତ୍ସବାଦି ସମ୍ବନ୍ଧରେ ଉପଦେଶ ଦେବେ । ସେ ଏଠାକୁ ଆସି ବିଗ୍ରହ ପ୍ରତିଷ୍ଠା କଲେ, ମୁଁ ନିଜେ ସପ୍ତର୍ଷିମାନଙ୍କ ସହିତ ଏଠାରେ ଉପସ୍ଥିତ ହେବି । ତୁମ୍ଭ ବ୍ୟତୀତ ଅନ୍ୟ କେହି ବ୍ରହ୍ମଲୋକକୁ ଯିବାକୁ ସମର୍ଥ ନୁହନ୍ତି । ତେଣୁ ଚାଲ, ଉଭୟେ ବ୍ରହ୍ମଲୋକକୁ ଯିବା ।" ଏହା କହି ଆକାଶପଥରେ ଗମନ କରିବା ପାଇଁ ଉଦ୍ୟତ ହେଲେ ।

---

## ମହର୍ଷି ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ବ୍ରହ୍ମଲୋକ ଗମନ

ତଦନନ୍ତର ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ମହର୍ଷି ନାରଦ କହିଲେ, "ଏହି ଯେଉଁ ପୁଷ୍ପରଥ ଅଛି, ତାହା ମନଠାରୁ ଅଧିକ ବେଗଗାମୀ । ଉକ୍ତ ରଥରେ ଆରୋହଣ କରି ଆକାଶପଥରେ ଗମନ କରିବା ।" ଏହା ଶୁଣି ଇନ୍ଦ୍ରଦ୍ୟୁମ୍ନ ପ୍ରାସାଦ କାର୍ଯ୍ୟରେ ନିଯୁକ୍ତ ଥିବା ବ୍ୟକ୍ତିମାନଙ୍କୁ ପ୍ରୟୋଜନୀୟ ଆଦେଶ ଦେଇ ଜଗନ୍ନାଥାଦି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ପ୍ରଦକ୍ଷିଣ କରି ବ୍ରହ୍ମଲୋକକୁ ଯିବାପାଇଁ ପ୍ରଭୁଙ୍କଠାରେ ଅନୁମତି ପ୍ରାର୍ଥନା କଲେ । ନାରଦ ଓ ଇନ୍ଦ୍ରଦ୍ୟୁମ୍ନ ଦିବ୍ୟଯାନରେ ଆରୋହଣ କରି ଊର୍ଦ୍ଧ୍ୱକୁ ଯାତ୍ରା କଲେ । କ୍ରମେ କ୍ରମେ ଆକାଶମଣ୍ଡଳର ମଧ୍ୟବର୍ତ୍ତୀ ସୂର୍ଯ୍ୟମଣ୍ଡଳକୁ ପ୍ରଦକ୍ଷିଣ କରି ଧ୍ରୁବମଣ୍ଡଳରେ ଉପସ୍ଥିତ ହେଲେ । ପରେ ଆହୁରି ଊର୍ଦ୍ଧ୍ୱକୁ ଯିବାବେଳେ ସିଦ୍ଧଗଣ ଏ ଦୁହିଁଙ୍କୁ ଦେଖି ଓ ଯାତ୍ରାର ଉଦ୍ଦେଶ୍ୟ ଜାଣିପାରି ଆନନ୍ଦିତ ହେଲେ । ବ୍ରହ୍ମର୍ଷି ନାରଦ ଜୀବନ୍ମୁକ୍ତ ହେତୁ ଅବାରିତ ଭାବରେ ସମସ୍ତ ଲୋକକୁ ଭ୍ରମଣ କରିବାକୁ ସମର୍ଥ । ନର-ଲୋକବାସୀ ମହାରାଜ ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ବିଷ୍ଣୁଭକ୍ତିପ୍ରସାଦରୁ ନାରଦଙ୍କ ସହ ଯାତ୍ରା କରିବାକୁ ସମର୍ଥ ହୋଇଥିଲେ । ପରେ ଉଭୟେ ମହଃ ଲୋକରେ ଉପସ୍ଥିତ ହୋଇ କ୍ରମେ କ୍ରମେ ଊର୍ଦ୍ଧ୍ୱକୁ ଗଲେ । ଭଗବତ

ପ୍ରୀତି ନିମନ୍ତେ କର୍ମଭୂମି ଭାରତରେ ଯେଉଁ ପ୍ରାସାଦ ନିର୍ମାଣକାର୍ଯ୍ୟ ଆରମ୍ଭ କରି ଯାଇଅଛନ୍ତି, ତାହା ସମ୍ପୂର୍ଣ୍ଣ ହୋଇଅଛି କି ନାହିଁ ବୋଲି ଇନ୍ଦ୍ରଦ୍ୟୁମ୍ନ ଚିନ୍ତିତ ହେଲେ ଏବଂ ଭାବିଲେ, କାଳେ ଶତ୍ରୁମାନେ ମୋର ବ୍ରହ୍ମଲୋକକୁ ଯିବା କଥା ଶୁଣି ପ୍ରାସାଦ ନିକଟକୁ ଆସି ସେହି ପ୍ରାସାଦକୁ ନଷ୍ଟ ବା ଅଧିକାର କରି ନେବେ ବା ବେତନଭୋଗୀ ଶିଳ୍ପୀମାନେ ପ୍ରାସାଦର ଅବଶିଷ୍ଟ କାର୍ଯ୍ୟ କରିବାକୁ ବିଳମ୍ବ କରିବେ । ଯେଉଁମାନେ ବ୍ରହ୍ମଲୋକକୁ ଆସନ୍ତି, ସେମାନେ ପୁଣି ପୃଥିବୀକୁ ଫେରନ୍ତି ନାହିଁ ଭାବି ଅଧୀନସ୍ଥ ସାମନ୍ତ ରାଜାମାନେ ମଧ୍ୟ ତାଙ୍କ ରାଜ୍ୟ ଦଖଲ କରିବାକୁ କୁଣ୍ଠାବୋଧ କରିବେ ନାହିଁ । ତ୍ରିକାଳଜ୍ଞ ମୁନିବର ନାରଦ ଏହା ଜାଣିପାରି ରାଜାଙ୍କୁ ଚିନ୍ତା କରିବାକୁ ବାରଣ କରି କହିଲେ "ଯେଉଁମାନେ ଏଠାକୁ ଆସନ୍ତି, ସେମାନଙ୍କର ତୁଚ୍ଛ ସଂସାର କାର୍ଯ୍ୟରେ କୌଣସି ଦୁଃଖ ବା ଶୋକ ନ ଥାଏ । ପୂର୍ବେ ତୁମ୍ଭର କେହି ଅପକାର କରି ନାହାନ୍ତି କି ବର୍ତ୍ତମାନ ମଧ୍ୟ କରିବେ ନାହିଁ । ଏହି ବ୍ରହ୍ମଲୋକକୁ ଆସିବାରୁ ତୁମ୍ଭର ପ୍ରତାପ ଓ ଯଶ ସୂର୍ଯ୍ୟ ଓ ଚନ୍ଦ୍ରଙ୍କ ପରି ତ୍ରିଲୋକରେ ବ୍ୟାପୀ ରହିଅଛି । ତୁମ୍ଭ କାର୍ଯ୍ୟରେ ସ୍ୱୟଂ ଚତୁର୍ମୁଖ ବ୍ରହ୍ମା ସହାୟକ ଅଟନ୍ତି । ତେଣୁ ବିଘ୍ନର କୌଣସି ଆଶଙ୍କା ନାହିଁ ।" ଏହିପରି କଥୋପକଥନ କରୁ କରୁ ଇନ୍ଦ୍ରଲୋକ ଅତିକ୍ରମ କଲେ । ଏହାର ଉପରିଭାଗରେ କୋଟିଚନ୍ଦ୍ର ପରି ଦୀପ୍ତିଶାଳୀ ସର୍ବବିଧ ସନ୍ତୋଷଦାୟକ ଏବଂ ଆହ୍ଲାଦଜନକ ତେଜୋରାଶି ଦୃଷ୍ଟ ହେଲା । ବ୍ରହ୍ମଲୋକ ନିକଟରେ ଉପସ୍ଥିତ ହୋଇ ବ୍ରହ୍ମର୍ଷିମାନଙ୍କର ସୁସ୍ୱର ଓ ସୁସ୍ପଷ୍ଟ ବେଦାଧ୍ୟୟନ ଶବ୍ଦ ଶୁଣାଗଲା । ଏହାହିଁ ବ୍ରହ୍ମସଦନ ବୋଲି ନାରଦ କହିଲେ । ଏଥିରେ ବ୍ରହ୍ମା ବ୍ରହ୍ମର୍ଷିଗଣଙ୍କ ସହିତ ବିରାଜିତ ଅଛନ୍ତି । ପ୍ରାଣୀମାନେ ଥରେ ଏଠାକୁ ଆସିଲେ ସଂସାରସାଗରରେ ଆଉ ପଡ଼ନ୍ତି ନାହିଁ ।

"ସଦ୍ୱତ ବହ୍ମେଣ ନାମ ଯସ୍ମାଦୂର୍ଦ୍ଧଂ ଭୁବୋଽନ୍ତମଃ ।
ସତ୍ୟଲୋକ ଇତି ଖ୍ୟାତ ସ୍ତଦୂର୍ଦ୍ଧଂ ନାସ୍ତି କିଞ୍ଚନ ॥
ଅସ୍ୟୈବ କର୍ଣ୍ଣୂପରି ଅଥଣ୍ଡାଣ୍ଡ—କପାଲତଃ ।
ବୈକୁଣ୍ଠଭୁବନଂ ରାଜନ୍ ମୁକ୍ତା ଯତ୍ର ବସନ୍ତିବୈ ।
ଯତ୍ର ଯୋଗେଶ୍ୱରଃ ସାକ୍ଷାତ୍ ଯୋଗିଚିନ୍ତ୍ୟା ଜନାର୍ଦ୍ଦନଃ ॥
ଚୈତନ୍ୟେବ ପୁଂସ-ପ୍ରେବୈ ସାନ୍ଦ୍ରାନନ୍ଦାତ୍ମକଂ ପ୍ରଭୁଃ ।
ଯଂ ପ୍ରାପ୍ୟ ନ ନିବର୍ତ୍ତନ୍ତେ ମୃତ୍ୟୁ ସଂସାର ବର୍ତ୍ମନି ॥

ସ ଏବ ସ୍ରଷ୍ଟା ଲୋକାନାଂ ମତ୍ସ୍ୟକୂର୍ମାଦିରୂପଧୃକ୍
ରକ୍ଷିତା ରୁଦ୍ର ରୂପେଣ ସଂହର୍ତ୍ତା ଲୋକଭାବନଃ ॥

[ ଉତ୍କଳ ଖଣ୍ଡେ ]

ଅର୍ଥାତ୍:—'ସତ୍' ଏହି ଶବ୍ଦଟି ବ୍ରହ୍ମାଙ୍କ ନାମ । ତେଣୁ ତାହାଙ୍କ ଭୁବନର ନାମ ସତ୍ୟଲୋକ । ତାହାର ଉପରଭାଗରେ ବୈକୁଣ୍ଠ-ଭୁବନ ରହିଅଛି । ଯୋଗୀମାନଙ୍କର ଚରମାଶ୍ରୟ ଯୋଗେଶ୍ୱର ପ୍ରଭୁ ଜନାର୍ଦ୍ଦନ ସେଠାରେ ବାସ କରନ୍ତି । ଯାହାଙ୍କୁ ଆଶ୍ରୟ କଲେ ଆଉ ମୃତ୍ୟୁପଥରେ ପଥିକ ହେବାକୁ ପଡ଼େ ନାହିଁ, ସେ ଲୋକମାନଙ୍କର ସ୍ରଷ୍ଟା ଓ ମତ୍ସ୍ୟକୂର୍ମାଦି ଅବତାର ରୂପରେ ଲୋକମାନଙ୍କୁ ରକ୍ଷା କରନ୍ତି ଏବଂ ରୁଦ୍ରରୂପରେ ସଂହାର କରନ୍ତି । ଏହିପରି କଥୋପକଥନ କରି କରି ଉଭୟେ ଗମନ କରନ୍ତେ ବ୍ରହ୍ମଭୁବନର ସଭାଦ୍ୱାରରେ ଉପସ୍ଥିତ ହୋଇ ଦେଖିଲେ ଯେ ଇନ୍ଦ୍ରାଦି-ଦିକ୍‌ପାଳଗଣ, ପିତୃଗଣ ଓ ମନ୍ୱନ୍ତରର ଅଧିପତିମାନେ ସାଧାରଣ ଲୋକପରି ବହୁକାଳ ରହି ଭିତରକୁ ଯିବାପାଇଁ ଦ୍ୱାରପାଳର ଅନୁଗ୍ରହ ଭିକ୍ଷା କରୁଅଛନ୍ତି । ଉକ୍ତ ଦ୍ୱାରପାଳ ନାରଦଙ୍କୁ ନମସ୍କାର କରି କହିଲା, "ଆପଣ ଚତୁର୍ଦ୍ଦଶ ଭୁବନ ଭ୍ରମଣ କରୁଅଛନ୍ତି । ଗୌତମାଦି ଋଷିମାନେ ଏଠାରେ ଥିଲେ ସୁଦ୍ଧା ଆପଣଙ୍କ ବିନା ଏହି ବ୍ରହ୍ମସଭା ଶୋଭାପାଉନାହିଁ ।" ତତ୍ପରେ ନାରଦ ବ୍ରହ୍ମାଙ୍କ ନିକଟକୁ ଯିବାପାଇଁ ଅଗ୍ରସର ହେଲେ ।

---

## ବ୍ରହ୍ମସଭାରେ ନାରଦ ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରବେଶ

ନାରଦ ଦ୍ୱାରପାଳଙ୍କୁ କହିଲେ, "ରାଜା ଇନ୍ଦ୍ରଦ୍ୟୁମ୍ନ ଜଣେ ମହାଯଶସ୍ୱୀ, ସାର୍ବଭୌମ ଓ ବୈଷ୍ଣବଚୂଡ଼ାମଣି; ବ୍ରହ୍ମାଙ୍କ ଦର୍ଶନ ନିମିତ୍ତ ଏଠାକୁ ଆସି ଅଛନ୍ତି । ସମ୍ପ୍ରତି ତୁମ୍ଭେ ଅନୁମତି ଦେଲେ ସେ ବ୍ରହ୍ମାଙ୍କ ନିକଟକୁ ଯାଇ ପାରିବେ ।" ଦିକ୍‌ପାଳଗଣ, ପିତୃଗଣ ଓ ମନ୍ୱନ୍ତରାଧିପତିଙ୍କ ପରି ଏହି ମର୍ତ୍ତ୍ୟବାସୀ ଅମିତପ୍ରଭ ନରପତିଙ୍କୁ ମଧ୍ୟ କିଛିକ୍ଷଣ ଅପେକ୍ଷା କରିବା ଉଚିତ ଏବଂ ଆପଣ ବ୍ରହ୍ମାଙ୍କ ନିକଟକୁ ଯାଇ ଏ ବିଷୟ ତାଙ୍କୁ ଜଣାଇଲେ ପରେ ଏହାଙ୍କୁ ସଭାମଧ୍ୟକୁ ଆପଣ ନେଇଯିବେ ବୋଲି ଦ୍ୱାରପାଳ ବିନୀତଭାବରେ କହିଲା । ତହୁଁ ନାରଦ ବ୍ରହ୍ମାଙ୍କ ନିକଟକୁ ଯାଇ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ

ବିଷୟ ଜଣାଇବାରୁ ବିଧାତା କଟାକ୍ଷଭଙ୍ଗୀ ଦ୍ୱାରା ପ୍ରବେଶର ଅନୁମତି ଦେଲେ । କାରଣ ଉକ୍ତ ସମୟରେ ବ୍ରହ୍ମସଭାରେ ଯେଉଁ ସଙ୍ଗୀତ ହେଉଥିଲା, ସେଥିରେ ସେ ମନଧ୍ୟାନ ଦେଇଥିବା ହେତୁ ମୁଖରେ କିଛି ନ କହି ଇଙ୍ଗିତରେ ପ୍ରକାଶ କରିଥିଲେ । ତଦନୁସାରେ ନାରଦଙ୍କ ଇଙ୍ଗିତ ଦ୍ୱାରା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କ ନିକଟକୁ ଗଲେ । ଏହି ଘଟଣା ଦେଖି ଇନ୍ଦ୍ରାଦି ଦେବତା ବିସ୍ମିତ ହେଲେ । ଇନ୍ଦ୍ରଦ୍ୟୁମ୍ନ ନାରଦଙ୍କ ଆଦେଶାନୁସାରେ କିଛି ଦୂରରେ ରହି ପ୍ରଣାମ କରି ଦଣ୍ଡାୟମାନ ହେଲେ । ସେ ସମୟରେ ଲକ୍ଷ୍ମୀକାନ୍ତ ବିଷ୍ଣୁଙ୍କ ପବିତ୍ର ଚରିତ୍ରର ଗାନ ଶ୍ରବଣ କରି ବ୍ରହ୍ମା କିଛିକାଳ ତୁଷ୍ଣୀଭାବରେ ରହିଥିଲେ । ସାବିତ୍ରୀ ଓ ସରସ୍ୱତୀ ଦୁଇ ପାର୍ଶ୍ୱରେ ରହି ବ୍ୟଜନ କରୁଥିଲେ । ସ୍ୱୟଂ ବ୍ରହ୍ମା କଳାକାଷ୍ଠା ଓ ନିମେଷାଦି ଦ୍ୱାରା ଯୋଗପର୍ଯ୍ୟାୟର ସଂଖ୍ୟା କରୁଥିଲେ । ମାତ୍ର ସେଠାରେ ମନ୍ୱନ୍ତର, ଯୁଗାବର୍ତ୍ତନ ଓ କଳ୍ପାନ୍ତରର କୌଣସି ବିଦ୍ୟମାନତା ନ ଥିଲା ।

---

## ଇନ୍ଦ୍ରଦ୍ୟୁମ୍ନ ଓ ବ୍ରହ୍ମାଙ୍କ କଥୋପକଥନ ଏବଂ ଦୁର୍ବାସାଙ୍କ ପ୍ରବେଶ

ଉକ୍ତ ସଙ୍ଗୀତର ଅବସାନରେ ସ୍ୱୟଂ ବ୍ରହ୍ମା ହସି ହସି ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ, "ତୁମ୍ଭେ ଭଗବାନଙ୍କୁ ସାକ୍ଷାତ୍ କରିବାର ପ୍ରକୃତ ପାତ୍ର । ଏହି ସତ୍ୟଲୋକ ଅନ୍ୟପକ୍ଷରେ ଦୁର୍ଲଭ । ମୁନିମାନେ ନିଷ୍ପାପ ହୋଇ ଏହି ଲୋକକୁ ଆସିବାକୁ ଇଚ୍ଛା କରନ୍ତି ଏବଂ ସେମାନେ ମହାପ୍ରଳୟ ପର୍ଯ୍ୟନ୍ତ ତପସ୍ୟା କରୁଥାନ୍ତି ।" ଇନ୍ଦ୍ରଦ୍ୟୁମ୍ନଙ୍କ ଆଗମନର ଉଦ୍ଦେଶ୍ୟ ଜାଣି ସୁଦ୍ଧା ତୁମ୍ଭେ କାହିଁକି ଏଠାକୁ ଆସିଅଛ ବୋଲି ବ୍ରହ୍ମା ତାଙ୍କୁ ପଚାରିଥିଲେ । ଇନ୍ଦ୍ରଦ୍ୟୁମ୍ନ କହିଲେ, "ଆପଣଙ୍କ ପୁତ୍ର ମହର୍ଷି ନାରଦଙ୍କଠାରୁ ଆପଣଙ୍କ ଆଦେଶ ଅବଗତ ହୋଇ ମୁଁ ସହସ୍ର ସଂଖ୍ୟକ ଅଶ୍ୱମେଧଯଜ୍ଞ ସମ୍ପନ୍ନ କରିଅଛି । ବର୍ତ୍ତମାନ, ଭୂତ ଓ ଭବିଷ୍ୟତ ଏହି ତ୍ରିକାଳର ପ୍ରଭୁ ଜଗନ୍ନାଥ ଦେବ ଦାରୁରୂପରେ ଆବିର୍ଭୂତ ହୋଇ ଅଛନ୍ତି । ଆପଣଙ୍କ ଅନୁଗ୍ରହରୁ ଉକ୍ତ ପ୍ରଭୁଙ୍କୁ ଦର୍ଶନ କରି ଏହି ସତ୍ୟଲୋକକୁ ଆସିବା ପାଇଁ ମୁଁ ସମର୍ଥ ହୋଇଅଛି ।

ସେହି ପ୍ରଭୁଙ୍କ ନିମିତ୍ତ ପ୍ରାସାଦ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇଅଛି । ସମ୍ପ୍ରତି ଆପଣ ସ୍ୱୟଂ ଗମନ କରି ପ୍ରାସାଦରେ ଜଗନ୍ନାଥଦେବଙ୍କୁ ସ୍ଥାପନ କରି ପ୍ରତିଷ୍ଠା କଲେ ମୋର କାମନା ପୂର୍ଣ୍ଣ ହେବ । ଏଥିପାଇଁ ମୁଁ ଆପଣଙ୍କ ପାଦପଦ୍ମ ଦର୍ଶନ କରିବା ପାଇଁ ଆସିଅଛି । ଆପଣ ପ୍ରସନ୍ନ ହୋଇ ମୋର ଅଭୀଷ୍ଟ ସିଦ୍ଧ କରନ୍ତୁ । ଜଗନ୍ନାଥ ଓ ଆପଣଙ୍କ ମଧ୍ୟରେ ପ୍ରଭେଦ ନାହିଁ ନାହିଁ । ସେ କେବଳ ସ୍ଥାପନୀୟ ଓ ଆପଣ ସ୍ଥାପୟିତା । ସେ ବେଦ୍ୟ ଓ ଆପଣ ବେଦୟିତା ।”

ଏପରି ସମୟରେ ଦୁର୍ବାସା ମୁନି ସେହି ବ୍ରହ୍ମସଭାରେ ଉପସ୍ଥିତ ହୋଇ ବ୍ରହ୍ମାଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ ପୂର୍ବକ ଜଣାଇଲେ, “ଦ୍ୱାରଦେଶରେ ଲୋକପାଳଗଣ, ପିତୃଗଣ ଓ ମନ୍ୱନ୍ତର ଅଧିପତିମାନେ ଦ୍ୱାରପାଳ ଦ୍ୱାରା ନିବାରିତ ହୋଇ ଅତି ଦୀନଜନ ପରି ବହୁକାଳରୁ ରହିଅଛନ୍ତି । ଆପଣଙ୍କ ଅନୁମତିରେ ସେମାନେ ଆସି ଆପଣଙ୍କ ପାଦପଦ୍ମ ଦର୍ଶନ କରି ପାରୁନାହାନ୍ତି । କିନ୍ତୁ ରାଜା ଇନ୍ଦ୍ରଦ୍ୟୁମ୍ନ ଏଠାକୁ କିପରି ଆସିଲେ, ତାହା ମୁଁ ଜାଣିବା ପାଇଁ ଇଚ୍ଛାକରେଁ ।” ବ୍ରହ୍ମା କହିଲେ, “ଇନ୍ଦ୍ରଦ୍ୟୁମ୍ନଙ୍କ ସହିତ ଏମାନେ କୌଣସି ବିଷୟରେ ସମାନ ନୁହନ୍ତି । ସେମାନେ ମୋହ ବଶୀଭୂତ ହୋଇ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ସ୍ପର୍ଦ୍ଧା କରୁଅଛନ୍ତି । ରାଜା ଇନ୍ଦ୍ରଦ୍ୟୁମ୍ନ ସତ୍କର୍ମ ଦ୍ୱାରା ପାପ ସମୂହ କ୍ଷୟ କରି ଜୀବନ୍ମୁକ୍ତ ହୋଇଅଛନ୍ତି । ସେ ମୋର ଅଧସ୍ତନ ପଞ୍ଚମ ସନ୍ତାନ ଅଟନ୍ତି । ମାତ୍ର ଏହି ଦେବତାମାନେ ସୁଖଭୋଗର ପୌରୁଷ ପାଇଁ ମୋର ଏହି ଲୋକକୁ ଆସିବା ସକାଶେ ତପସ୍ୟା କରୁଥିଲେ । ମୋର ଅନୁଗ୍ରହରୁ ଦ୍ୱାରଦେଶ ପର୍ଯ୍ୟନ୍ତ ଆସିବାକୁ ସମର୍ଥ ହୋଇଅଛନ୍ତି । ବର୍ତ୍ତମାନ ତୁମ୍ଭେ ଜଣାଇବା ହେତୁ ସେମାନେ ମୋ ଦର୍ଶନ ପାଇଁ ଆସିପାରନ୍ତି ।”

ଏହାପରେ ଦୁର୍ବାସା ସେମାନଙ୍କୁ ଆହ୍ୱାନ କରି ସଭାକୁ ଆସିବାକୁ କହିଲେ ଓ ଦେବତାମାନେ ପାଦୂକମାନଙ୍କ ନିକଟରେ ରହି ସାଷ୍ଟାଙ୍ଗ ପ୍ରଣାମ କଲେ ।

## ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ବ୍ରହ୍ମାଙ୍କ କୃପାପୂର୍ଣ୍ଣ ଆଦେଶ ପ୍ରଦାନ

ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ, "ତୁମ୍ଭେ ଭଗବାନଙ୍କ ଅବସ୍ଥିତି ପାଇଁ ଯେଉଁ ପ୍ରାସାଦ ନିର୍ମାଣ କରିଥିଲ, ତାହା ମୁଁ ଜାଣିଅଛି । ତୁମ୍ଭର ସେ ରାଜ୍ୟ ଲୋପ ହେଲାଣି । ବର୍ତ୍ତମାନ ତୁମ୍ଭର ସନ୍ତାନସନ୍ତତିଙ୍କ ସମ୍ପର୍କ ମଧ୍ୟ ଲୋପ ହେଲାଣି । ତୁମ୍ଭର ଏହି ସଙ୍ଗୀତ ଶ୍ରବଣର କାଳ, ତୁମ୍ଭ ପକ୍ଷରେ ଅତି ଦୀର୍ଘକାଳ ଅଟେ । ଦେବତାମାନଙ୍କର ୭୧ ଚତୁର୍ଯୁଗରେ ) ଏକ ମନ୍ୱନ୍ତର ହୁଏ । ଏହି ମନ୍ୱନ୍ତର କାଳ ମଧ୍ୟରେ ତୁମ୍ଭର ଯେ କେବଳ ବଂଶଲୋପ ହୋଇଅଛି, ତାହା ନୁହେଁ; କୋଟି କୋଟି ଭୂପତି ମଧ୍ୟ ଲୋପ ପାଇଛନ୍ତି । କେବଳ ସେହି ଦାରୁ-ମୂର୍ତ୍ତି ଓ ପ୍ରାସାଦ ସେହିଠାରେ ରହିଅଛି । ମୋ ପାଖରେ ତୁମ୍ଭେ ଛିଡ଼ାହୋଇ ରହିବାମଧ୍ୟରେ ଦ୍ୱିତୀୟ ମନୁ ସ୍ୱାରୋଚିଷଙ୍କ ଆଦ୍ୟଯୁଗ ଅର୍ଥାତ୍ ସତ୍ୟଯୁଗର କାଳ ଅତୀତ ହୋଇଅଛି । ତଥାପି ତୁମ୍ଭେ ମୃତ୍ୟୁ ଓ ଜରାର ବଶୀଭୂତ ହୋଇନାହିଁ ଏବଂ ତୁମ୍ଭର ଋତୁବିପର୍ଯ୍ୟୟ ବା କାଳର ପରିମାଣ ମଧ୍ୟ ପରିଦୃଷ୍ଟ ହେଲାନାହିଁ । ବର୍ତ୍ତମାନ ତୁମ୍ଭେ ଭୂଲୋକକୁ ଯାଇ ଉକ୍ତ ଦେବ ଓ ଦେବପ୍ରାସାଦକୁ ନିଜର ଆୟତ୍ତ କର ଏବଂ ପ୍ରତିଷ୍ଠାର ସମସ୍ତ ଦ୍ରବ୍ୟ ସମ୍ଭାର ଆୟୋଜନ କର । ପରେ ମୁଁ ସେଠାକୁ ଗମନ କରିବି ।"

ତତ୍ପରେ ପିତାମହ ଦେବଗଣଙ୍କୁ ଆସିବାର କାରଣ ପଚାରିଲେ । ଦେବତାମାନେ ସାଦରରେ ଜଣାଇଲେ ଯେ ଇତିପୂର୍ବରେ ନୀଳ-ପର୍ବତରେ ଯେଉଁ ନୀଳମଣିମୟ ଦେବଙ୍କୁ ସେମାନେ ଉପାସନା କରୁଥିଲେ, ସେ ପ୍ରଭୁ କେଉଁ କାରଣରୁ ଅନ୍ତର୍ହିତ ହେଲେ ଏବଂ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ଯଜ୍ଞ ଶେଷରେ ସେ କାହିଁକି ଦାରୁବିଗ୍ରହ ଧାରଣ କରି ଆବିର୍ଭୂତ ହେଲେ ? ବ୍ରହ୍ମା କହିଲେ, "ଏ ବିଷୟ ଗୋପନୀୟ ହେତୁ ଏଥିପୂର୍ବେ କାହାଠାରେ ପ୍ରକାଶ କରାଯାଇ ନାହିଁ, ଇତିପୂର୍ବେ ମୋର ଏକପରାର୍ଦ୍ଧ କାଳବ୍ୟାପୀ ଏହି ପୁରୁଷୋତ୍ତମ କ୍ଷେତ୍ରରେ ଭଗବାନ ନୀଳକାନ୍ତ ମଣିମୟ ଶରୀର ଧାରଣ କରି ଅବସ୍ଥିତ ଥିଲେ । ଆଜି ପ୍ରାତଃକାଳରୁ ଶ୍ୱେତବାରାହ କଳ୍ପର ସ୍ୱାୟଂଭୁବ ନାମକ ମନୁ ପ୍ରବର୍ତ୍ତିତ ହେଲେ ଏବଂ ମୋର ଆୟୁର ଶେଷକାଳ ପର୍ଯ୍ୟନ୍ତ ପ୍ରଭୁ ବିରାଜିତ ଥିବେ । ଭଗବାନ୍ ମୋର ଆତ୍ମା ଏବଂ ମୁଁ ମଧ୍ୟ ତାହାଙ୍କ ଆତ୍ମା ଅଟେ । ତାଙ୍କ ଓ ମୋ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ଯେଉଁ

ପୁରୁଷୋତ୍ତମ କ୍ଷୀରସମୁଦ୍ର ମଧ୍ୟସ୍ଥ ଶ୍ୱେତଦ୍ୱୀପ ରୂପଶଯ୍ୟାରେ ଯୋଗ-ନିଦ୍ରାଦେବୀଙ୍କ ଆଶ୍ରୟରେ ଶୟନ କରିଥାନ୍ତି, ସେହି ପୁରୁଷୋତ୍ତମ ଏହି ଚରାଚର ଜଗତର ଆଦିମୂଳ ଅଟନ୍ତି । ତାହାଙ୍କ ଶରୀରଜାତ ରୋମରାଜି ଶଙ୍ଖଚକ୍ରାଙ୍କିତ ହୋଇ କଳ୍ପଦ୍ରୁମରୂପେ ରହିଅଛନ୍ତି । ସେଥିମଧ୍ୟରୁ ଚୈତନ୍ୟର ଅଧିଷ୍ଠାନ-ସ୍ୱରୂପ ପୂର୍ବକାଳରୁ ଯେଉଁ ବୃକ୍ଷଟି ଥିଲା, ତାହା ପ୍ରଥମରୁ ସମୁଦ୍ରରେ ସ୍ୱୟଂ ପତିତ ହୋଇଅଛି । ଏହି ଗୋପନୀୟ ବିଷୟରେ କୌଣସି ତର୍କବିତର୍କ କରିବା ଅନୁଚିତ । ସେ ଯେଉଁ ପ୍ରକାରରେ ଚିନ୍ତାକରେ, ଅର୍ଥାତ୍ ଧର୍ମିଷ୍ଠ ଲୋକଙ୍କଠାରେ ପରମାତ୍ମା ପରିତୃଷ୍ଟ ହେଲେ ଧର୍ମ, ଅର୍ଥ, କାମ ମୋକ୍ଷ ଏପରି ଚତୁର୍ବର୍ଗ ଦାନ କରିଥାନ୍ତି । ତାହାଙ୍କ ଦର୍ଶନରେ ଭୂମଣ୍ଡଳରେ ପ୍ରାଣୀମାନେ କ୍ରମଶଃ ନିଷ୍ପାପ ଓ ନିର୍ମଳାତ୍ମା ହୋଇ ମୁକ୍ତିଲାଭ କରନ୍ତି ।"

ଏହା ଶୁଣି ଦେବତାମାନେ ଭୂଲୋକକୁ ଯାଇ କ୍ଷେତ୍ରୋତ୍ତମରେ ପୁରୁଷୋତ୍ତମଙ୍କୁ ଆରାଧନା କରିବା ପାଇଁ ଇଚ୍ଛା କଲେ । ପୁଣି ବ୍ରହ୍ମା କହିଲେ, "ଦାରୁବ୍ରହ୍ମ ଇନ୍ଦ୍ରଦ୍ୟୁମ୍ନଙ୍କ ନିମିତ୍ତ ପ୍ରକାଶିତ ହୋଇଅଛନ୍ତି । ମୁଁ ମଧ୍ୟ ଦାରୁବ୍ରହ୍ମ ପ୍ରତିଷ୍ଠା କରିବାକୁ ଯିବି । ପ୍ରଥମେ ଇନ୍ଦ୍ରଦ୍ୟୁମ୍ନ ଯାଆନ୍ତୁ । ସେ ପ୍ରତିଷ୍ଠାର ସମ୍ଭାରମାନ ଆୟୋଜନ କରିବେ । ତୁମ୍ଭେ ସମସ୍ତେ ବର୍ତ୍ତମାନ ନିଜ ନିଜ ଅଧିକାର ତ୍ୟାଗକରି ସେଠାକୁ ଯାଇ ଇନ୍ଦ୍ରଦ୍ୟୁମ୍ନଙ୍କର ସହାୟକ ହୁଅ । ପ୍ରଥମ ମନ୍ୱନ୍ତର ଶେଷ ହୋଇଥିବାରୁ ପ୍ରାସାଦ ଓ ଦେବତାମାନଙ୍କ ବିଷୟରେ ଇନ୍ଦ୍ରଦ୍ୟୁମ୍ନଙ୍କ ସ୍ୱାମୀତ୍ୱର ପ୍ରମାଣ କରାଇବା ପାଇଁ ତୁମ୍ଭେମାନେ ସେଠାକୁ ଯାଅ । ରାଜା ଅସହାୟ ହୋଇପଡ଼ିଛନ୍ତି । ପଦ୍ମନିଧି ତୁମ୍ଭ ସହିତରେ ଯିବେ ଏବଂ ସମସ୍ତେ ମିଶି ପ୍ରତିଷ୍ଠାଦ୍ରବ୍ୟ ଆୟୋଜନ କରିବ ।"

ଏହି ସଦଆଜ୍ଞା ଶିରୋଧାର୍ଯ୍ୟ କରି ଦେବତାମାନେ ଓ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ନମସ୍କାର କରି ଭୂଲୋକକୁ ଆସିଲେ ।

## ଇନ୍ଦ୍ରଦ୍ୟୁମ୍ନ ଓ ଦେବତାମାନଙ୍କ ଭୂତଳକୁ ଆଗମନ ଓ ପ୍ରାସାଦ ଦର୍ଶନ

ଇନ୍ଦ୍ରଦ୍ୟୁମ୍ନ ବହୁକାଳ ପରେ ଭୂତଳକୁ ଆସି ଉତ୍କଣ୍ଠିତ ଚିତ୍ତରେ ଦାରୁବ୍ରହ୍ମଙ୍କୁ ପ୍ରଦକ୍ଷିଣ କରି ପ୍ରଣତି-ସହକାରେ ସ୍ତୁତି କଲେ—

"ନମୋ ବ୍ରହ୍ମଣ୍ୟ ଦେବାୟ ଗୋ ବ୍ରାହ୍ମଣ ହିତାୟଚ ।
ପ୍ରଣତାର୍ତ୍ତି ବିନାଶାୟ ଚତୁର୍ବର୍ଗୈକ-ହେତବେ ।।
ହିରଣ୍ୟଗର୍ଭ-ସ୍ୱରୂପ ପ୍ରଧାନା ବ୍ୟକ୍ତରୂପିଣେ ।
ଓଁ ନମୋ ବାସୁଦେବାୟ ଶୁଦ୍ଧଜ୍ଞାନ ସ୍ୱରୂପିଣେ ।।"

ଏହା ଉଚ୍ଚାରଣ କରୁ କରୁ ରାଜା ରୋମାଞ୍ଚିତ ହେଲେ ଓ ସାନନ୍ଦରେ ପୁନଃ ପୁନଃ ପ୍ରଣାମ କଲେ । ପରେ ଦେବତାମାନେ ମଧ୍ୟ ଉପସ୍ଥିତ ହୋଇ "ସହସ୍ରଶୀର୍ଷାଃ ପୁରୁଷଃ" ଇତ୍ୟାଦି ବାକ୍ୟରେ ସ୍ତୁତି କଲେ (ଏହା ଭୃଷ୍ଣପୁ ଭାଗରେ ସାନୁବାଦ ପ୍ରକାଶିତ ହେବ) । ତାହାପରେ ସମସ୍ତେ ଆସି ନରସିଂହଙ୍କୁ ଭକ୍ତିସହକାରେ ଅର୍ଚ୍ଚନା କଲେ ଏବଂ ଦ୍ରବ୍ୟସମ୍ଭାର ଆୟୋଜନ ପାଇଁ ପରେ ପଦ୍ମନିଧିଙ୍କ ସଙ୍ଗତରେ ନୀଳାଚଳ ଶିଖରକୁ ଗମନ କଲେ । ସେଠାକୁ ଯାଇ ଦେଖିଲେ, ପ୍ରାସାଦ ଏତାଦୃଶ ଗଗନଭେଦୀ ଉଚ୍ଚ ଯେ ସୂର୍ଯ୍ୟଙ୍କ ଗତିରୋଧ କରିବା ପାଇଁ ବୋଧହୁଏ ବିନ୍ଧ୍ୟପର୍ବତ ହଠାତ୍ ଉନ୍ନତ ହୋଇଯାଇଅଛି ! ବହୁକାଳ ଅତୀତ ହେଲେ ସୁଦ୍ଧା ବିଭିନ୍ନ ଶିଳ୍ପଶୋଭିତ ପ୍ରାସାଦଟି ନୂତନ ନିର୍ମିତ ପରି ଦେଖାଯାଉଅଛି । ଇନ୍ଦ୍ରଦ୍ୟୁମ୍ନ ମଧ୍ୟ ଦେଖି ବିସ୍ମିତ ହେଲେ ଯେ, ସତ୍ୟଲୋକକୁ ଗଲାବେଳେ ପ୍ରାସାଦଟିର ଅର୍ଦ୍ଧାଂଶ ମାତ୍ର ନିର୍ମାଣ ହୋଇଥିଲା । ତାହା ବର୍ତ୍ତମାନ ପ୍ରଭୁଙ୍କ ଅନୁଗ୍ରହରୁ ପୂର୍ଣ୍ଣାଙ୍ଗପ୍ରାପ୍ତ ହୋଇଅଛି ଓ ଅନ୍ୟ ପ୍ରାସାଦମାନଙ୍କ ଉପରେ ବୃକ୍ଷାଦି ଉତ୍ପନ୍ନ ହୋଇ ଶୀର୍ଣ୍ଣ ଦେଖା ଯାଉଥିଲେ ସୁଦ୍ଧା ଏହି ପ୍ରାସାଦଟି ପ୍ରଭୁ ନିଜ ନିକେତନ ପରି ରକ୍ଷାକରି ଅଛନ୍ତି । ପ୍ରତିଷ୍ଠା ପାଇଁ କି କି ଦ୍ରବ୍ୟ ସଂଗ୍ରହ କରିବାକୁ ହେବ ବୋଲି ଦେବତାମାନଙ୍କୁ ପଚାରିବାରୁ, ସେମାନେ ଏ ବିଷୟରେ କିଛି ଜାଣନ୍ତି ନାହିଁ ଓ ଏହା ଦେବଗୁରୁ ବୃହସ୍ପତି ଜାଣନ୍ତି ବୋଲି କହିଲେ । ଇତ୍ୟବସରେ ପଦ୍ମନିଧି ଉପସ୍ଥିତ ହୋଇ ରାଜାଙ୍କୁ କହିଲେ ଯେ, ବ୍ରହ୍ମାଙ୍କ ଆଦେଶାନୁଯାୟୀ ସେ ଏଠାକୁ ଆସିଅଛନ୍ତି । ସମ୍ପ୍ରତି କି କି ଦ୍ରବ୍ୟ ସଂଗ୍ରହ କରିବାକୁ ହେବ, କହନ୍ତୁ । ଏପରି ସମୟରେ ବ୍ରହ୍ମାଙ୍କ ପ୍ରେରିତ

ସର୍ବଶାସ୍ତ୍ରବିଶାରଦ ନାରଦ ସେଠାରେ ଉପସ୍ଥିତ ହେଲେ । ଇନ୍ଦ୍ରଦ୍ୟୁମ୍ନ ଓ ଦେବତାମାନେ ନାରଦଙ୍କୁ ସମ୍ମାନ ପ୍ରଦର୍ଶନ କଲେ । ମହାରାଜା ଷଡ଼ାର୍ଘ୍ୟ ପୂଜା ଦ୍ୱାରା ନାରଦଙ୍କୁ ଅର୍ଚ୍ଚନା କଲେ ଓ ପରେ ପ୍ରାସାଦ ପ୍ରତିଷ୍ଠା ସକାଶେ ଦ୍ରବ୍ୟ ସମୂହ ପ୍ରସ୍ତୁତ କରିବାପାଇଁ ନାରଦଙ୍କୁ କହିଲେ ।

---

## ପ୍ରାସାଦ ପ୍ରତିଷ୍ଠାପାଇଁ ଦ୍ରବ୍ୟ ସଂଗ୍ରହ

ମହର୍ଷି ନାରଦ ଶାସ୍ତ୍ର ବିଗ୍ରହସହ ଦ୍ରବ୍ୟ ତାଲିକା ପତ୍ରରେ ଲେଖି ରାଜାଙ୍କୁ ପ୍ରଦାନ କଲେ । ରାଜା ଉକ୍ତ ତାଲିକା ପଦ୍ମନିଧିଙ୍କୁ ଦେଇ ସମସ୍ତ ଦ୍ରବ୍ୟ ସଂଗ୍ରହ କରିବାକୁ ଅନୁରୋଧ କଲେ । ନାରଦ କହିଲେ, "ପ୍ରଥମତଃ ପର୍ଣ୍ଣମଣ୍ଡପଶାଳା ନିର୍ମାଣ କରନ୍ତୁ । ସେଥିରେ ବ୍ରହ୍ମା ଓ ବ୍ରହ୍ମର୍ଷିମାନଙ୍କ ସଦନ ଶୁଭ୍ର ଓ ନିର୍ମଳ ହେବ । ଇନ୍ଦ୍ରାଦି ଦେବତା, ସିଦ୍ଧ, ମର୍ତ୍ତ୍ୟବାସୀ ମୁନୀନ୍ଦ୍ର, ରାଜା ଓ ପାତାଳବାସୀ ନାଗରାଜାଗଣଙ୍କ ନିବାସ ପାଇଁ ଯଥୋପଯୁକ୍ତ ଗୃହମାନ ନିର୍ମାଣ କରନ୍ତୁ । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ଏହି ତିନିଲୋକବାସୀଙ୍କ ପାଇଁ ଉପଯୋଗୀ ପଣ୍ୟଦ୍ରବ୍ୟମାନ ଉଭୟ ପାର୍ଶ୍ୱରେ ରଖି ତନ୍ମଧ୍ୟରେ ସୁପ୍ରଶସ୍ତ ପଥ ଓ ଗୃହମାନଙ୍କୁ ଶ୍ରେଣୀବଦ୍ଧ କରି ଶୀଘ୍ର ସମ୍ପାଦନ କରନ୍ତୁ । ଏ ବିଷୟରେ ବିଶ୍ୱକର୍ମା ଆପଣଙ୍କୁ ସାହାଯ୍ୟ କରିବେ । ବିଶେଷତଃ, ଦ୍ରବ୍ୟମାନଙ୍କ ସମ୍ଭାର ସାବଧାନ ସହିତ ସଂଗ୍ରହ କରିବେ । ତିନୋଟି ରଥ ନିର୍ମିତ ହେବ । ସ୍ୱର୍ଣ୍ଣାଲଙ୍କାରରେ ଅଳଙ୍କୃତ କରି ସୂକ୍ଷ୍ମ ବସ୍ତ୍ରମାଳ୍ୟ ଓ ଚନ୍ଦ୍ରାତପ ଦ୍ୱାରା ରଥମାନ ସୁସଜ୍ଜିତ କରିବାକୁ ହେବ । ବାସୁଦେବଙ୍କ ରଥ ଗରୁଡ଼ ଧ୍ୱଜରେ ଚିହ୍ନିତ ହେବ । ସୁଭଦ୍ରାଙ୍କ ରଥ ଉପରେ ଦେବୀପତାକା ଖଞ୍ଜାହେବ ଏବଂ ଅନନ୍ତଦେବ ବଳଭଦ୍ରଙ୍କ ରଥ ତାଳ ଅର୍ଥାତ ଦର୍ପଣ ଚିହ୍ନରେ ଚିହ୍ନିତ ହେବ ଏବଂ ତାଳଧ୍ୱଜ ପତାକା ମଧ୍ୟ ଖଞ୍ଜାଯିବ । ରଥସମୂହ ପ୍ରତିଷ୍ଠା ନ ହେଲେ ଦାରୁବିଗ୍ରହ ରଥ ଉପରକୁ ଯିବେ ନାହିଁ । ଅପ୍ରତିଷ୍ଠ ପ୍ରାସାଦ ବା ମଣ୍ଡପରେ ପ୍ରଭୁଙ୍କୁ ସ୍ଥାପନ କଲେ କର୍ମ ନିଷ୍ଫଳ ହୁଏ । ମୁଁ ପ୍ରଥମେ ରଥ ପ୍ରତିଷ୍ଠା କାର୍ଯ୍ୟ କରିବି । ପିତାଙ୍କଠାରୁ ମୁଁ ସେପରି ଆଜ୍ଞା ପାଇ ଏଠାକୁ ଆସିଅଛି ।"

---

## ରଥତ୍ରୟ ନିର୍ମାଣ ଓ ସେମାନଙ୍କର ପ୍ରତିଷ୍ଠା

ପଦ୍ମନିଧି ସବିବିଧ ଦ୍ରବ୍ୟ ସଂଗ୍ରହ କରିବାରୁ ସ୍ୱୟଂ ବିଶ୍ୱକର୍ମା ଏକଦିନ ମଧ୍ୟରେ ରଥତ୍ରୟ ନିର୍ମାଣ କଲେ । ରଥଗୁଡ଼ିକର ଚକ ସୁଗଠିତ ଓ ସୁବିସ୍ତୀର୍ଣ୍ଣ । ତୋରଣମାନ ସୁନ୍ଦର, ଧ୍ୱଜମାନ ପତାକାଦ୍ୱାରା ସୁଶୋଭିତ ଏବଂ ନାନା ଚିତ୍ର ବିଚିତ୍ରଦ୍ୱାରା ମନୋହର ଦିଶୁଥିଲା । ସ୍ୱର୍ଣ୍ଣନିର୍ମିତ ଯୁଗଳ-ପୁତ୍ତଳିକା ସବୁ ରଥରେ ଖଞ୍ଜା ହୋଇଥିଲା । ରଥ ଟାଣିବା ପାଇଁ ରଜ୍ଜୁ ଅତ୍ୟନ୍ତ ଦୃଢ଼ ଥିଲା । ଶୁଭ୍ରବର୍ଣ୍ଣ ବାୟୁବେଗଗାମୀ ଶତସଂଖ୍ୟକ ଘୋଟକମାନେ ରଥରେ ଯୋଗ୍ୟ ହୋଇଥିଲେ । ଜ୍ୟୋତିଷ-ଶାସ୍ତ୍ରମତେ ଶୁଭଦିନରେ ନାରଦ ଶାସ୍ତ୍ରବିଧିଅନୁସାରେ ରଥ ପ୍ରତିଷ୍ଠା କଲେ । ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ଦ୍ଦେଶ ଅନୁସାରେ ଦେବଶିଳ୍ପୀ ବିଶ୍ୱକର୍ମା ସ୍ୱର୍ଣ୍ଣ ଓ ନାନାବିଧ ମଣି ମାଣିକ୍ୟ ଦ୍ୱାରା ଏକ ବିଶାଳ ଦେବଶାଳା ନିର୍ମାଣ କଲେ । ପ୍ରାସାଦ ପ୍ରତିଷ୍ଠା ପାଇଁ ପ୍ରଭୂତ ଘୃତ, ସମିଧ, ନାନାବିଧ ଭୋଜ୍ୟବସ୍ତୁ ସଂଗ୍ରହ କରାଯାଇଥିଲା । ବହୁବିଧ ଗୀତବାଦ୍ୟର ଉତ୍ସବ ହେଉଥିଲା ।

ଏଥିପୂର୍ବେ ଭୂତଳରେ ଗାଲ ନାମକ ଏକ ରାଜା ରାଜତ୍ୱ କରୁଥିଲେ । ସେ ମାଧବ ନାମକ ଏକ ଦାରୁମୟ ବିଷ୍ଣୁ-ପ୍ରତିମା ନିର୍ମାଣ କରାଇ ଇନ୍ଦ୍ରଦ୍ୟୁମ୍ନଙ୍କ ନିର୍ମିତ ମନ୍ଦିରରେ ରଖି ପୂଜା କରୁଥିଲେ । ବ୍ରହ୍ମଲୋକରୁ ଇନ୍ଦ୍ରଦ୍ୟୁମ୍ନ ଫେରିଆସିବାପରେ ସେ ନିଜେ (ଇନ୍ଦ୍ରଦ୍ୟୁମ୍ନ) ଅପେକ୍ଷାକୃତ କ୍ଷୁଦ୍ର ଅପର ଗୋଟିଏ ପ୍ରାସାଦ ନିର୍ମାଣ କରାଇ ସେଠାରେ ଗାଲଙ୍କ ପ୍ରତିଷ୍ଠିତ "ମାଧବ ଦାରୁମୟ" ମୂର୍ତ୍ତିଙ୍କୁ ତାଙ୍କ ପୂର୍ବକୃତ ପ୍ରାସାଦରୁ ଆଣି ସେଠାରେ ସ୍ଥାପନ କଲେ । ଇନ୍ଦ୍ରଦ୍ୟୁମ୍ନଙ୍କ ଆୟୋଜନ ବିଷୟ ଦୂତମୁଖରୁ ଶୁଣି ଗାଲ କ୍ରୋଧାନ୍ୱିତ ହୋଇ ସୈନ୍ୟ ସହିତ ନୀଳଗିରିରେ ଉପସ୍ଥିତ ହେଲେ ।

## ଇନ୍ଦ୍ରଦ୍ୟୁମ୍ନ ଓ ଗାଲରାଜାଙ୍କ କଥା

ମାତ୍ର ଗାଲରାଜା ପୁରୁଷୋତ୍ତମ ପ୍ରତିଷ୍ଠାର ଆୟୋଜନ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲେ ଓ ପ୍ରତିଷ୍ଠା କାର୍ଯ୍ୟପାଇଁ ସ୍ୱୟଂ ବ୍ରହ୍ମା ଦେବଗଣ, ପଦ୍ମନିଧି ଓ ମହର୍ଷି ନାରଦଙ୍କ ସହିତ ଏ ସ୍ଥାନକୁ ଆସିଛନ୍ତି ବୋଲି ଜାଣି ଆନନ୍ଦିତ ହେଲେ । ଏପରି କାର୍ଯ୍ୟ କେବେ ହୋଇନାହିଁ କି ହେବ ନାହିଁ; ଏହା ବିଚାର କରି ସେ ଏଠାରେ ରଥ ପ୍ରଭୁଙ୍କ ଉତ୍ସବ ବିଷୟ ଜାଣି ପ୍ରତିବର୍ଷ ଯଥାବିଧି ସମ୍ପନ୍ନ କରିବାକୁ ମନସ୍ଥ କଲେ । ଦୁର୍ଭାଗ୍ୟହେତୁ ଅଦ୍ୟାବଧି ଦାରୁମୟ ସାକ୍ଷାତ୍ ବ୍ରହ୍ମରୂପୀ ପ୍ରଭୁଙ୍କୁ ଜାଣି ନ ପାରି ନିଜ ଜନ୍ମ ବିଫଳ ହୋଇଛି ବୋଲି ଦୁଃଖପ୍ରକାଶ କଲେ । ଭଗବାନ୍ ନାରାୟଣଙ୍କୁ ପ୍ରାସାଦ ମଧ୍ୟରେ ପ୍ରତିଷ୍ଠିତ ହେବା ଦେଖି ମୋର ନିଶ୍ଚୟ ମୁକ୍ତିଲାଭ ହେବ ଏବଂ ମହାରାଜ ଇନ୍ଦ୍ରଦ୍ୟୁମ୍ନ ପ୍ରଭୁଙ୍କ ସେବାଭାର ବୋଧହୁଏ ମୋତେ ଦେଇ ବ୍ରହ୍ମଲୋକକୁ ଫେରିଯିବେ । କାରଣ ବ୍ରହ୍ମଲୋକକୁ ଯାଇଥିବାରୁ ଇନ୍ଦ୍ରଦ୍ୟୁମ୍ନ କାହିଁକି ପୁନର୍ବାର ଭୂତଳରେ ବାସ କରିବେ । ଏହା ଭାବି ମହାତ୍ମା ନୃପରାଜ ଗାଲ ନିଜ ମନ୍ତ୍ରୀମାନଙ୍କ ସହିତ ବ୍ରହ୍ମଲୋକାଗତ ଇନ୍ଦ୍ରଦ୍ୟୁମ୍ନଙ୍କ ନିକଟକୁ ଯାଇ ସଭୟରେ ପ୍ରଣାମ ପୂର୍ବକ ଧୀରେ ଧୀରେ କହିଲେ, "ହେ ରାଜ-ରାଜ ! ଆପଣ ମର୍ତ୍ତ୍ୟଲୋକବାସୀ ହୋଇ ମଧ୍ୟ ସ୍ୱଦେହରେ ବ୍ରହ୍ମଲୋକକୁ ଯାଇଥିଲେ । ଆପଣ ଅସୀମ ଶକ୍ତିସମ୍ପନ୍ନ ଓ ଜୀବନ୍ମୁକ୍ତ । ମୁଁ ସାମାନ୍ୟ କୀଟପରି । ଆପଣଙ୍କ ମହିମା ନ ଜାଣି ଯୁଦ୍ଧ କରିବାକୁ ଆସିଥିଲି । ଏଠାରେ ଅଲୌକିକ ଅଦ୍ଭୁତ, ମହାପୌରୁଷ ଐଶ୍ୱର୍ଯ୍ୟ ଦେଖି ବିସ୍ମିତ ହେଲି । ଦେବଗଣ ଓ ପଦ୍ମନିଧି ଆପଣଙ୍କ ଆଜ୍ଞାକାରୀ ହୋଇଅଛନ୍ତି । ଆପଣ ଦୟାକରି ମୋ ପ୍ରତି ସନ୍ତୁଷ୍ଟ ହୁଅନ୍ତୁ ।"

ଇନ୍ଦ୍ରଦ୍ୟୁମ୍ନ ହସି ହସି କହିଲେ, "ଆପଣ ମଧ୍ୟ ଜଣେ ହରିଭକ୍ତ ଓ ସାର୍ବଭୌମ ନରପତି । ଯେଉଁ ବ୍ୟକ୍ତି ଯଥାବିଧାନରେ ପ୍ରାସାଦ ମଧ୍ୟରେ ବିଷ୍ଣୁପ୍ରତିମା ସ୍ଥାପନ କରେ, ସେ ଦେହବନ୍ଧନରୁ ମୁକ୍ତହୋଇ ବିଷ୍ଣୁଙ୍କ ପରମପଦ ଲାଭକରେ । ଆପଣ ମୁକ୍ତିଦାତା ଦାରୁମୟ ମାଧବ ପ୍ରତିମା ସ୍ଥାପନ କରିଅଛନ୍ତି । ମୋ ସମ୍ବନ୍ଧରେ ଏକ ମନ୍ୱନ୍ତର ଅତୀତ ହେଲାଣି ; କିନ୍ତୁ କାର୍ଯ୍ୟସିଦ୍ଧି ହୋଇନାହିଁ । ଏହି ପ୍ରାସାଦ ପ୍ରତିଷ୍ଠା ପାଇଁ ମୁଁ ବ୍ରହ୍ମାଙ୍କୁ ପ୍ରାର୍ଥନା କରିଥିଲି । ସେ ଯଦି ଅନୁଗ୍ରହପୂର୍ବକ ଏଠାକୁ

ଆସି ପ୍ରାସାଦରେ ହରିଙ୍କୁ ପ୍ରତିଷ୍ଠା କରନ୍ତୁ, ତାହାହେଲେ ଏହି ପ୍ରାସାଦ ମୁଁ ଆପଣଙ୍କୁ ସମର୍ପଣ କରି ବ୍ରହ୍ମଲୋକକୁ ଫେରିଯିବି । ଭଗବାନଙ୍କର ନିତ୍ୟଉପଚାରର ମାନା, ଜମ୍ବୁବାଦ ବିଧି ସମ୍ବନ୍ଧରେ ସ୍ୱୟଂ ପିତାମହ ଯେପରି ଉପଦେଶ ଦେବେ, ତାହା ଯତ୍ନସହକାରେ ଆପଣ ପାଳନ କରିବେ ।”

ଗାଲ ଯାହା ଭାବିଥିଲେ ସେହି କଥା ଇନ୍ଦ୍ରଦ୍ୟୁମ୍ନଙ୍କଠାରୁ ଶୁଣି ଅତ୍ୟନ୍ତ ପ୍ରୀତ ହେଲେ ।

---

## ବ୍ରହ୍ମାଙ୍କର ଭୂତଳକୁ ଆଗମନ ଓ ପ୍ରାସାଦାଦି ଦର୍ଶନ

ଇତ୍ୟବସରରେ ଆକାଶରୁ ଦିବ୍ୟ ଦୁନ୍ଦୁଭି ନାଦ ପ୍ରଭୃତି ମନ-ମୁଗ୍ଧକର ଧ୍ୱନି ଶ୍ରୁତିଗୋଚର ହେଲା ଏବଂ ସ୍ୱର୍ଗ ମର୍ତ୍ତ୍ୟକୁ ଆଲୋକିତ କରୁଥିବା ତେଜୋରାଶି ଦୃଷ୍ଟହେଲା—ଯାହାର ତେଜରେ ଭୂତଳବାସୀ ଉପରକୁ ଚାହିଁବାକୁ ଅସମର୍ଥ ହେଲେ । କ୍ରମେ ସେହି ତେଜୋରାଶି ମଧ୍ୟଭାଗରେ ବିମାନାଧିଷ୍ଠିତ ବ୍ରହ୍ମା ଦୃଷ୍ଟିଗୋଚର ହେଲେ । ଚତୁର୍ଦ୍ଦିଗରେ ଶତଶତ ସ୍ୱର୍ଣ୍ଣହଂସ ସେ ବିମାନକୁ ବହନ କରିଥିଲେ । ଦିକ୍‌ପାଳମାନେ ଚାମର ବିଞ୍ଚୁଥିଲେ । ଗଙ୍ଗା ଓ ଯମୁନା ଉଭୟ ପାର୍ଶ୍ୱରେ ରହି ପବିତ୍ର ଜଳରେ ବ୍ରହ୍ମାଙ୍କ କଳେବରକୁ ଅଭିଷିକ୍ତ କରୁଥିଲେ । ଚନ୍ଦ୍ର ଓ ସୂର୍ଯ୍ୟ ଛତ୍ରଯୁଗଳ ଧାରଣ କରିଥିଲେ । ଗୌତମାଦି ମହର୍ଷିମାନେ ମନ୍ତ୍ର ଉଚ୍ଚାରଣ କରି ସ୍ତବ କରୁଥିଲେ । ଦେବତାମାନେ ଚତୁର୍ଦ୍ଦିଗରେ ଜୟଧ୍ୱନି କରୁଥିଲେ । ରମ୍ଭାଦି ସ୍ୱର୍ଗବେଶ୍ୟାମାନେ ନୃତ୍ୟ କରୁଥିଲେ । ସଙ୍ଗୀତ ନିପୁଣ “ହା ହା” “ହୁ, ହୁ” ପ୍ରଭୃତି ଗନ୍ଧର୍ବମାନେ ସୁମଧୁର ଗୀତ ଗାଉଥିଲେ ଓ ବିଦ୍ୟାଧରମାନେ ମନୋହର ବୀଣା ବାଦନ କରୁଥିଲେ । ସାବିତ୍ରୀ ଓ ସରସ୍ୱତୀ ଦେବୀ ବିବିଧ ବାକ୍ ପ୍ରବନ୍ଧରେ ତାହାଙ୍କୁ ସନ୍ତୁଷ୍ଟ କରୁଥିଲେ । ଦୂରରେ ତପସ୍ୱୀମାନେ କୃତାଞ୍ଜଳିପୁଟରେ ଉପାସନା କରୁଥିଲେ । ବ୍ରହ୍ମାଙ୍କୁ ରଥରୁ ଅବତରଣ କରାଇବା ପାଇଁ ରତ୍ନ କାଞ୍ଚନ ନିର୍ମିତ ଦିବ୍ୟ ସୋପାନମାଳା ବ୍ରହ୍ମାଙ୍କ ବିମାନସ୍ଥିତ ପାଦପୀଠରେ ସଂଲଗ୍ନ ହେବାରୁ ତାହାର ମୂଳଭାଗ ଭୂତଳକୁ ସ୍ପର୍ଶ କଲା । ତତ୍ପରେ ବ୍ରହ୍ମା ମହର୍ଷି ଦୁର୍ବାସା ଓ ନାରଦଙ୍କ ହସ୍ତ ଧାରଣ ପୂର୍ବକ ଭୂତଳରେ ଅବତୀର୍ଣ୍ଣ ହେଲେ । ଇନ୍ଦ୍ରଦ୍ୟୁମ୍ନ ଆନନ୍ଦରେ ନମସ୍କାର

କଲେ । ଦେବରଥତ୍ରୟ ଓ ସମଳଙ୍କୃତ ପ୍ରାସାଦ ଦର୍ଶନରେ ବ୍ରହ୍ମା ଆନନ୍ଦିତ ହେଲେ ଏବଂ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ ଯେ, ତୁମ୍ଭେ ଶ୍ରେଷ୍ଠ ବଳରେ ସତ୍ୟଲୋକକୁ ବଶ କରିଅଛ । ଦେବ, ପିତୃ, ବ୍ରହ୍ମର୍ଷି, ତପସ୍ୱୀ, ସିଦ୍ଧ, ବିଦ୍ୟାଧର, ଯକ୍ଷ, ଗନ୍ଧର୍ବ ଓ ଅପ୍ସରା ପ୍ରଭୃତି ତୁମ୍ଭ କାର୍ଯ୍ୟପାଇଁ ସମସ୍ତେ ଏକ କାଳରେ ସମ୍ମିଳିତ ହୋଇଅଛନ୍ତି ।

---

## ବ୍ରହ୍ମାଙ୍କର ରଥସ୍ଥ ଦାରୁବିଗ୍ରହ ନିକଟକୁ ଗମନ ଓ ସ୍ତବ

ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି କଥା କହି ଜଗନ୍ନାଥଙ୍କ ରଥ ନିକଟକୁ ଯାଇ ବ୍ରହ୍ମା ତିନିବାର ପ୍ରଦକ୍ଷିଣ କଲେ ଓ ରୋମାଞ୍ଚ କଳେବର ହୋଇ ନିଜ ଆତ୍ମସ୍ୱରୂପ ପ୍ରତ୍ୟକ୍ଷୀଭୂତ ସେହି ଜଗନ୍ନାଥଙ୍କୁ ସ୍ତୁତି କଲେ, "ହେ ବିଶ୍ୱଆତ୍ମନ୍ ! ମୁଁ ଯିଏ, ଆପଣ ଯିଏ । ସୁତରାଂ ଆପଣ ଓ ମୁଁ ଉଭୟେ ଅଭିନ୍ନାତ୍ମା । କିନ୍ତୁ ମୋ ସହିତ ଅଖିଳ ଚରାଚର ଜଗତ ଆପଣଙ୍କ ମାୟାର ବିଳାସ ମାତ୍ର । ମୁଁ ସୃଷ୍ଟିଭାରରୁ ମୁକ୍ତି ପାଇଁ ଆପଣଙ୍କ ନିକଟରେ ପୂର୍ବେ ଯେଉଁ ପ୍ରାର୍ଥନା କରିଥିଲି; ହେ ପ୍ରଭୋ ! ତାହା ପୂର୍ଣ୍ଣ କରନ୍ତୁ । ହେ କୃପାନିଧେ ! ଆପଣଙ୍କ ଲୀଳାଭେଦରେ ଆପଣଙ୍କଠାରୁ ମୋତେ ଭିନ୍ନ କରି ଅଜ୍ଞାନ ଅନ୍ଧକାରବୃତ ଜଗତର କାରାଗୃହ ମଧ୍ୟରେ ଆପଣ ମୋତେ ନିକ୍ଷେପ କରିଅଛନ୍ତି । ଏଥିରୁ ମୋତେ ମୁକ୍ତ କରନ୍ତୁ । ଅନନ୍ତକାଳ ଭ୍ରମଣ କରି ମୁକ୍ତିର ଦ୍ୱାର ଲାଭ କରି ପାରିନାହିଁ । ସୃଷ୍ଟି କାର୍ଯ୍ୟପାଇଁ ମୋତେ ଯେପରି ସର୍ଜନା କରିଅଛନ୍ତି, ସେହିପରି କୋଟି କୋଟି ବ୍ରହ୍ମା ଓ କୋଟି କୋଟି ବ୍ରହ୍ମାଣ୍ଡ ମଧ୍ୟ ସର୍ଜନା କରିଅଛନ୍ତି; କିନ୍ତୁ ସାର୍ଦ୍ଧ ତିନିକୋଟି ବ୍ରହ୍ମାଙ୍କ ମଧ୍ୟରେ ଆପଣଙ୍କ ସମ୍ମୁଖବର୍ତ୍ତୀ ମୋ ସଦୃଶ କୌଣସି ବ୍ରହ୍ମା ଆପଣଙ୍କ ମହିମା ଯଥାର୍ଥରୂପେ ଜାଣନ୍ତି ନାହିଁ । ଅନନ୍ତ ମହିମାନ୍ୱିତ ପ୍ରଭୋ ! ମୁଁ ଆପଣଙ୍କୁ ପୁନଃ ପୁନଃ ନମସ୍କାର କରୁଅଛି । ଦୁଃଖସାଗରରେ ପତିତ ହୋଇଥିବା ଜଗଦ୍‌ବାସୀ ଜୀବମାନଙ୍କୁ ପ୍ରସନ୍ନ ହୋଇ କରୁଣାକଟାକ୍ଷ ଦ୍ୱାରା ପରିତ୍ରାଣ କରନ୍ତୁ ।"

ଏହିପରି ସ୍ତବ ପରେ ସେ ବଳଭଦ୍ରଙ୍କୁ ଦର୍ଶନ କରିବାକୁ ଗଲେ । ପ୍ରଣାମ ପୂର୍ବକ ବହୁବିଧ ସ୍ତବାନ୍ତେ ତାଙ୍କୁ ନିବେଦନ କଲେ, "ଜଗନ୍ନାଥ ଓ ଆପଣଙ୍କ ମଧ୍ୟରେ କିଛି ପ୍ରଭେଦ ନାହିଁ । ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ ।" ପରେ ବିଷ୍ଣୁଙ୍କ ଶକ୍ତି ଓ ସୁଭଦ୍ରାଙ୍କ ନିକଟକୁ ଯାଇ ନାନାବିଧ ସ୍ତବ କରି

କହିଲେ, "ଆପଣ ଜଗଦ୍ଧାତ୍ରୀ ମା ହେଁ ଭଦ୍ରା ନାମରେ ପ୍ରସିଦ୍ଧ ଏବଂ ନିଖିଳ ଜଗତର ମାତା ସ୍ୱରୂପ । ଜଗତରେ ଯାହା କିଛି ସ୍ତ୍ରୀରୂପ ଅଛି, ସେ ସମସ୍ତ ଆପଣ ଏବଂ ଯେତେ ପୁରୁଷ ରୂପ ଅଛି, ସେ ସମୁଦାୟ ନାରାୟଣ ଅଟନ୍ତି । ବିଷ୍ଣୁମାୟା ଦ୍ୱାରା ଆପଣ ଆମ୍ଭମାନଙ୍କୁ ଯେପରି କାର୍ଯ୍ୟରେ ନିଯୁକ୍ତ କରିଅଛନ୍ତି, ଆମ୍ଭେମାନେ ମଧ୍ୟ ଆପଣଙ୍କ ନିର୍ଦ୍ଦେଶ ଅନୁସାରେ ସେହିପରି କରୁଅଛୁଁ ।" ପରେ ବିଷ୍ଣୁଙ୍କ ଚତୁର୍ଥ ରୂପ ସୁଦର୍ଶନ ଚକ୍ରଙ୍କୁ ସ୍ତବ ଓ ପ୍ରଣାମ କଲେ ।

ତହିଁ ଉତ୍ତାରୁ ବ୍ରହ୍ମା ଦେବଗଣଙ୍କ ସହିତ ଦେବର୍ଷି ନାରଦ ଓ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରଦର୍ଶିତ ମାର୍ଗରେ ନୀଳାଚଳକୁ ଗମନ କଲେ ।

---

## ବ୍ରହ୍ମାଦି ଦେବତାଙ୍କ ଦ୍ୱାରା ପ୍ରାସାଦ ଓ ଦାରୁବିଗ୍ରହମାନଙ୍କ ପ୍ରାଣ ପ୍ରତିଷ୍ଠା

ଇନ୍ଦ୍ରଦ୍ୟୁମ୍ନ ପ୍ରଦତ୍ତ ପାଦପୀଠ ସମନ୍ୱିତ ଦିବ୍ୟ ସିଂହାସନରେ ବ୍ରହ୍ମା ଉପବେଶନ କଲେ । ନାଗଗଣ, ଦେବର୍ଷି, ଯୋଗୀ, ବ୍ରାହ୍ମଣ, ତପସ୍ୱୀ, ବୈଷ୍ଣବ ଓ ଭୂପତିମାନଙ୍କୁ ଯଥାଯୋଗ୍ୟ ଆସନ ଦିଆଗଲା । ସ୍ୱସ୍ତିକ, ପୌଷ୍ଟିକ କର୍ମାନୁଷ୍ଠାନ ପାଇଁ ଭରଦ୍ୱାଜଙ୍କୁ ବହୁମୂଲ୍ୟ ଦ୍ରବ୍ୟାଦି ସହ ବରଣ କରାଗଲା । ପ୍ରାସାଦ ପ୍ରତିଷ୍ଠାର ବିଧାନରେ ବଳି, ପୂଜା ଓ ହୋମାଦି ବିଷୟରେ ଯେଉଁ ଦେବତାମାନେ ଅର୍ଚ୍ଚନାର ଅଧିକାରୀ, ସେମାନଙ୍କୁ ଗନ୍ଧପୁଷ୍ପମାଲ୍ୟ ଓ ଅଳଙ୍କାରାଦି ଦ୍ୱାରା ଅର୍ଚ୍ଚନା କରାହୋଇଥିଲା । ତ୍ରିଲୋକବାସୀ ନିଖିଳ ଜୀବଗଣଙ୍କୁ ମଧ୍ୟ ଅର୍ଚ୍ଚନା କରାହୋଇଥିଲା । ଭରଦ୍ୱାଜ ପ୍ରତିଷ୍ଠା କାର୍ଯ୍ୟ ଆରମ୍ଭ କଲେ । ଜଗନ୍ନାଥଦେବଙ୍କ ଦାରୁମୟ କଳେବର ଏବଂ ସମୁନ୍ନତ ମହାଧ୍ୱଜ ସୁଶୋଭିତ ସୁମନୋହର ପ୍ରାସାଦ ଯଥାବିଧି ପ୍ରତିଷ୍ଠା କରି ଭଗବାନଙ୍କ ଜୀବସଞ୍ଚାର ପାଇଁ ଭରଦ୍ୱାଜ ବ୍ରହ୍ମାଙ୍କୁ ନିବେଦନ କଲେ ।

ମହାମୁନି ଭରଦ୍ୱାଜଙ୍କ ପ୍ରାର୍ଥନାନୁସାରେ ସ୍ୱୟଂ ବ୍ରହ୍ମା ସ୍ୱସ୍ତ୍ୟୟନାଦି କର୍ମାନୁଷ୍ଠାନ ଆରମ୍ଭ କଲେ । ନାରଦାଦି ଦେବର୍ଷି ଓ ମହର୍ଷି, ବିଦ୍ୱାନ୍ ବ୍ରାହ୍ମଣ, କ୍ଷତ୍ରିୟ ରାଜାଗଣ, ନାଗଗଣଙ୍କ ସହିତ ସ୍ୱୟଂ ବ୍ରହ୍ମା ଦଣ୍ଡାୟମାନ ହେଲେ । ଗନ୍ଧର୍ବମାନେ ସୁମଧୁର ସ୍ୱରରେ ମାଙ୍ଗଲ୍ୟ ରାଗରାଗିଣୀରେ ଦିବ୍ୟ ସଙ୍ଗୀତ ଗାନ କଲେ ଓ ଅପ୍ସରାମାନେ

ମନୋହର ନୃତ୍ୟ କଲେ । ବ୍ରାହ୍ମଣମାନେ ଶାକୁନସୂକ୍ତ ମନ୍ତ୍ର ପାଠ କଲେ । ଚତୁର୍ଦ୍ଦିଗରେ ଶଙ୍ଖ, କାହାଳୀ, ମୁରଜ, ଭେରୀ ଓ ବେଣୁ ପ୍ରଭୃତି ବାଦ୍ୟଯନ୍ତ୍ରରେ ମନୋମୁଗ୍ଧକର ମହାଶବ୍ଦ ଘୋଷିତ ହେଲା । ବ୍ରହ୍ମାଦି ଦେବତାମାନେ ରଥଉପରକୁ ଯାଇ ସଂଯତ ଭାବରେ ସଭକ୍ତିରେ ହସ୍ତଦ୍ୱାରା ପ୍ରଭୁଙ୍କ ପାର୍ଶ୍ୱଦେଶ-ଦ୍ୱୟ, ଭୁଜଯୁଗଳ, ପାଦଦ୍ୱୟ ଓ ମସ୍ତକକୁ ଧାରଣ କରି କ୍ରମେ କ୍ରମେ ମୃଦୁଭାବରେ ଅବ୍ୟୟ ନାରାୟଣଙ୍କୁ ରଥରୁ ସୋପାନରେ ଅବତରଣ କରାଇଲେ ଏବଂ ମଧ୍ୟେ ମଧ୍ୟେ ସ୍ଥାନବିଶେଷରେ ରଖି ପ୍ରାସାଦ ନିକଟକୁ ଘେନିଗଲେ । ଏ ସମୟରେ ସ୍ୱର୍ଗରୁ କଳ୍ପବୃକ୍ଷର ପୁଷ୍ପବୃଷ୍ଟି ହେଉଥିଲା । ବ୍ରହ୍ମା ନିମ୍ନୋକ୍ତ ପ୍ରକାରେ ପ୍ରଭୁଙ୍କ ସ୍ତବ କଲେ :—

"ଜୟ କୃଷ୍ଣ ଜଗନ୍ନାଥ ଜୟ ସର୍ବାଘନାଶନ ।
ଜୟ ଲୀଳା ଦାରୁତନୋ ଜୟ ବାଞ୍ଛାଫଳପ୍ରଦ ॥
ଜୟ ସଂସାର ସମଗ୍ନ-ଲୀଳୋଦ୍ଧାର ଜୟାବ୍ୟୟ ।
ଜୟାନୁକମ୍ପା ପାଥୋଧେ ଜୟ ଦୀନପରାୟଣ ॥
ଜୟାଚ୍ୟୁତ ଜୟାନନ୍ତ ଜୟେଶାନ ନମୋଽସ୍ତୁତେ ॥"

[ଉତ୍କଳ ଖଣ୍ଡେ]

ଦେବର୍ଷି ନାରଦ ମଧ୍ୟ ବୀଣାଦ୍ୱାରା ସ୍ତୁତି କଲେ । ଚନ୍ଦ୍ର ଓ ସୂର୍ଯ୍ୟ ଜଗନ୍ନାଥଦେବଙ୍କ ପୃଷ୍ଠଦେଶରେ ରହି ପ୍ରଭୁଙ୍କ ମସ୍ତକ ଉପରେ ରତ୍ନ-ଖଚିତ ଛତ୍ରଦ୍ୱୟ ଧାରଣ କଲେ । ଦେବତାମାନେ ଦିବ୍ୟ ଚନ୍ଦନ ଓ ଗନ୍ଧଦ୍ୱାରା ତାହାଙ୍କର ପ୍ରୀତି ଉତ୍ପାଦନ କଲେ । ଅନ୍ୟମାନେ ଭଗବାନଙ୍କ ଉଭୟ ପାର୍ଶ୍ୱରେ ଥାଇ ଦିବ୍ୟ ଚାମର ଦ୍ୱାରା ସେବା କରୁଥିଲେ । ଏହିପରି ଭାବରେ ସମସ୍ତେ ମିଳିତ ହୋଇ କ୍ରମାନୁସାରେ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ରଥରୁ ସେ ସ୍ଥାନକୁ ଘେନି ଆସିଲେ । ବ୍ରହ୍ମା ଦେବଗଣଙ୍କ ସମ୍ମୁଖରେ ଥିବା ଦର୍ପଣର ପ୍ରତିବିମ୍ବରେ ସୁଗନ୍ଧ କର୍ପୂରାଦି ସୁବାସିତ ତୀର୍ଥଜଳପୂର୍ଣ୍ଣ କୁମ୍ଭଦ୍ୱାରା ଶ୍ରୀସୂକ୍ତ ଓ ପୁରୁଷସୂକ୍ତ ମନ୍ତ୍ର ପାଠକରି ଅଭିଷେକ କଲେ । ପରେ ଦାରୁବିଗ୍ରହମାନଙ୍କୁ ଗନ୍ଧମାଲ୍ୟ ଦ୍ୱାରା ଶୋଭିତ କରାଗଲା । ଯଥାବିଧି ବେଦମନ୍ତ୍ର ଉଚ୍ଚାରଣ କରି ରମଣୀୟ ରତ୍ନସିଂହାସନରେ ବିଗ୍ରହମାନଙ୍କୁ ସ୍ଥାପନ କରି ବ୍ରହ୍ମା ପ୍ରାର୍ଥନା କଲେ, "ହେ ଦେବ ! ଦୟାକରି ପ୍ରାସାଦରେ ସୁପ୍ରତିଷ୍ଠିତ ହୁଅନ୍ତୁ । ଆପଣ ପ୍ରତିଷ୍ଠିତ ହେଲେ ଆମ୍ଭେମାନେ ସକଳେ ପ୍ରତିଷ୍ଠିତ ହେବୁ । ଆପଣଙ୍କ ଆଜ୍ଞାନୁସାରେ

ଏହି ପ୍ରତିଷ୍ଠା କାର୍ଯ୍ୟ ପୂର୍ଣ୍ଣହେଉ ।" ତତ୍ପରେ ଜଗନ୍ନାଥଙ୍କ ହୃଦୟ-କମଳ ସ୍ପର୍ଶକରି ଅନୁଷ୍ଟୁପ ମନ୍ତ୍ରରାଜ ସହସ୍ର ସଂଖ୍ୟକ ଜପ କଲେ ।

ବ୍ରହ୍ମା ବୈଶାଖ ମାସର ପୁଷ୍ୟାସଂଯୁକ୍ତ ଶୁକ୍ଳ ଅଷ୍ଟମୀ ତିଥି ବୃହସ୍ପତି ବାରରେ ଏହି ପ୍ରତିଷ୍ଠା କାର୍ଯ୍ୟ ସମ୍ପାଦନ କରିଥିଲେ । ତେଣୁ ଏହି ଦିବସଟି ଅତି ପୁଣ୍ୟତମ ଓ ସର୍ବପାପବିନାଶକ ଅଟେ । ପ୍ରତିବର୍ଷ ଏହି ତିଥିରେ ସ୍ନାନ, ଦାନ ଓ ହୋମାଦି କାର୍ଯ୍ୟ କଲେ ଅକ୍ଷୟ ଫଳ ମିଳେ । ଯେ ସଭକ୍ତିରେ ଏହି ଦିନ ନୀଳାଚଳପତିଙ୍କୁ ଦର୍ଶନ କରେ ସେ ନିଶ୍ଚୟ ମୁକ୍ତିଲାଭ କରେ । ଯେଉଁ ଦିନରେ ବୈଶାଖ ମାସର ଶୁକ୍ଳାଷ୍ଟମୀ ତିଥି ପୁଷ୍ୟାନକ୍ଷତ୍ର ଓ ବୃହସ୍ପତି ବାର ସଂଯୁକ୍ତ ହୁଏ, ସେ ଦିନ ଭଗବାନଙ୍କୁ ଅର୍ଚ୍ଚନା କଲେ କୋଟି ଜନ୍ମାର୍ଜ୍ଜିତ କଳୁଷରାଶି ଧ୍ୱଂସ ହୁଏ ।

---

## ଦାରୁବିଗ୍ରହ ଭଗବାନଙ୍କ ନୃସିଂହମୂର୍ତ୍ତି ଧାରଣ

ବ୍ରହ୍ମାଙ୍କ ମନ୍ତ୍ର ମହିମାରୁ ଭଗବାନଙ୍କୁ ଅଦ୍ଭୁତାକାର ନୃସିଂହ ମୂର୍ତ୍ତିରେ ଇନ୍ଦ୍ରଦ୍ୟୁମ୍ନାଦି ସମସ୍ତେ ଦର୍ଶନ କଲେ । ନୃସିଂହଦେବ ତାଙ୍କ ତେଜଃ ପ୍ରଦୀପ୍ତ ଜିହ୍ୱାଦ୍ୱାରା ସମୁଦାୟ ଜଗତକୁ ଅବଲେହନ କଲାପରି ଦେଖାଗଲେ । ଜଣାଗଲା ଯେ, ପ୍ରଭୁ କାଳାଗ୍ନିରୂପେ ଆବିର୍ଭୂତ ହୋଇ ଅଖିଳ ସଂସାରକୁ ଗ୍ରାସ କରିବାପାଇଁ ଉଦ୍ୟତ । ତେଜୋନିଧି ନୃସିଂହଦେବ ସର୍ବତୋଭାବରେ ଆଶ୍ଚର୍ଯ୍ୟମୟ ବୋଲି ପ୍ରତୀୟମାନ ହେଲେ । ତାହାଙ୍କ ଚକ୍ଷୁ, ମୁଖ, କର୍ଣ୍ଣ, ନାସିକା, ଗ୍ରୀବା ଓ ହସ୍ତଚରଣାଦି ଅସଂଖ୍ୟ ଅସଂଖ୍ୟ ଦୃଷ୍ଟ ହେଲା । ତେଜରାଶି ସ୍ୱର୍ଗ ମର୍ତ୍ତ୍ୟରେ ବ୍ୟାପ୍ତ ହୋଇଥିବାପରି ଜଣାଗଲା । ଏହି ଭୀମମୂର୍ତ୍ତି ଦର୍ଶନରେ ସମସ୍ତେ ସାତିଶୟ ଉଦ୍‌ବିଗ୍ନ ଓ ଭୟଭୀତ ହେଲେ ।

ହରି କାହିଁକି ଏପରି ଭୀମମୂର୍ତ୍ତି ଧାରଣ କଲେ ବୋଲି ନାରଦ ବ୍ରହ୍ମାଙ୍କୁ ପଚାରିଲେ । ବ୍ରହ୍ମା କହିଲେ "ସାକ୍ଷାତ୍ ବ୍ରହ୍ମରୂପୀ ଜଗନ୍ନାଥଙ୍କୁ ଦାରୁମୟ ଦେଖି ମୂଢ଼ ଲୋକମାନେ ଅବଜ୍ଞା କରିବେ । ତେଣୁ ପ୍ରଭୁଙ୍କ ମହିମା ଜାଣିବା ପାଇଁ ମୁଁ ସର୍ବମନ୍ତ୍ରପ୍ରଧାନ ପରମେଷ୍ଠି ମନ୍ତ୍ରରେ ଏହାଙ୍କୁ ଅଭିମନ୍ତ୍ରିତ କରିଅଛି । ପ୍ରାଣୀମାନେ ଏହି ମୂର୍ତ୍ତିଙ୍କୁ ପୂଜାକଲେ ନିର୍ବାଣ ମୁକ୍ତି ଲାଭ କରିବେ ଏବଂ ସେମାନଙ୍କର ପୁନର୍ଜ୍ଜନ୍ମ ମଧ୍ୟ ହେବ ନାହିଁ ।

---

## ବ୍ରହ୍ମାଙ୍କଠାରୁ ଇନ୍ଦ୍ରଦ୍ୟୁମ୍ନଙ୍କ ଦୀକ୍ଷାଗ୍ରହଣ

ପରେ ବ୍ରହ୍ମା ନୃସିଂହ-ଯନ୍ତ୍ର ଲେଖି ତହିଁ ଉପରେ ଅଥର୍ବବେଦୋକ୍ତ ନୃସିଂହଦେବଙ୍କ ପ୍ରଧାନ ମନ୍ତ୍ର ସନ୍ନିବେଶ କରି ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି ମନ୍ତ୍ରରେ ଦୀକ୍ଷା ପ୍ରଦାନ କଲେ । ବେଦାନ୍ତଶାସ୍ତ୍ର-ପାରଦର୍ଶୀ ପଣ୍ଡିତମାନେ ଯାହାକୁ ବୈଷ୍ଣବ ନିର୍ବାଣ ବୋଲି କହନ୍ତି; ଯେଉଁ ମନ୍ତ୍ର ବେଦଚତୁଷ୍ଟୟରେ ସାକ୍ଷାତ୍ ନିତ୍ୟ ବୋଲି ପ୍ରତିଷ୍ଠିତ ହୋଇଅଛି; ପୂର୍ବେ ସ୍ୱାୟମ୍ଭୁବ ମନୁ ବ୍ରହ୍ମାଙ୍କଠାରୁ ଯେଉଁ ମହାମନ୍ତ୍ର ପ୍ରାପ୍ତ ହୋଇ ଓ ସର୍ବଦା ଜପ କରି ସୃଷ୍ଟି ବିସ୍ତାର କରି ପାରିଥିଲେ; ଅଣିମାଦି-ଅଷ୍ଟସିଦ୍ଧି ଯେଉଁ ମନ୍ତ୍ରର ଆନୁସଙ୍ଗିକ ଫଳ; ଯେଉଁ ମହାମନ୍ତ୍ର ପ୍ରାଣୀବର୍ଗଙ୍କ ଧର୍ମ ଅର୍ଥ କାମ ଓ ମୋକ୍ଷ ପାଇଁ ଏକମାତ୍ର କାରଣ ସ୍ୱରୂପ ଓ ସମସ୍ତ ଯଜ୍ଞ, ତୀର୍ଥ ଓ ଦାନର ଫଳଦାୟକ, ସେଥିରେ ସାଧାରଣ କାମନା ସିଦ୍ଧ ହେବାର ବିଚିତ୍ର କିଛି ନୁହେଁ । ଦିବ୍ୟ ସିଂହାକୃତି ଏହି ନୃସିଂହଦେବ ପାପପୁଞ୍ଜକୁ ତୁଳାରାଶି ପରି ଭସ୍ମ କରିବାପାଇଁ ବିଦ୍ୟମାନ ଥାଆନ୍ତି । ଯତିମାନେ ଏହି ମନ୍ତ୍ର ଜପ କରି ଭବରୋଗରୁ ମୁକ୍ତ ହୁଅନ୍ତି । ଏହି ମନ୍ତ୍ର ଗ୍ରହଣରେ ଦୁଷ୍ଟଗ୍ରହ, ଗ୍ରହାପସ୍ମାର, ରାକ୍ଷସ, ଡାକିନୀ, ଭୂତପ୍ରେତ, ବେତାଳ, ପିଶାଚ ଓ ସର୍ପାଦି ଭୟ ବିଦୂରିତ ହୁଏ । ଏପରିକି ତା ପ୍ରତି ସେମାନେ କେହି ଦୃଷ୍ଟିପାତ କରିବାକୁ ସମର୍ଥ ହୁଅନ୍ତି ନାହିଁ । ବ୍ରହ୍ମା ସେହି ନୃସିଂହ ମନ୍ତ୍ରଦ୍ୱାରା ଇନ୍ଦ୍ରଦ୍ୟୁମ୍ନଙ୍କୁ ଦୀକ୍ଷିତ କରିଥିଲେ ।

---

## ନୃସିଂହଦେବଙ୍କ ଶାନ୍ତମୂର୍ତ୍ତି ଧାରଣ ଓ ଚତୁର୍ଦ୍ଧାମୂର୍ତ୍ତି କଥା

ମହାରାଜ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କଠାରୁ ଉକ୍ତ ମନ୍ତ୍ର ଗ୍ରହଣ କରି ଦେଖିଲେ ଯେ, ନୃସିଂହଦେବଙ୍କର ଆଉ ପୂର୍ବ ଭୀଷଣତା-ମୂର୍ତ୍ତି ନାହିଁ । ସେ ଶାନ୍ତରୂପ ଧାରଣ କରିଅଛନ୍ତି । ଲକ୍ଷ୍ମୀଦେବୀ ତାହାଙ୍କ ବକ୍ଷସ୍ଥଳରେ ବିରାଜିତ ଅଛନ୍ତି । ଚକ୍ଷୁଦ୍ୱୟ ଚନ୍ଦ୍ର ଓ ସୂର୍ଯ୍ୟଙ୍କ ପରି ଉଜ୍ଜ୍ୱଳ ଦିଶୁଅଛି । ହସ୍ତଦ୍ୱୟରେ ଚକ୍ର ଓ ଧନୁ ଶୋଭା ପାଉଅଛି । ଅପର ହସ୍ତଦ୍ୱୟ ଜାନୁ ଉପରକୁ ପ୍ରସାରିତ ହୋଇ ପଦ୍ମଯୁଗଳ ପରି ଅପୂର୍ବ ଶୋଭା ଧାରଣ କରିଅଛି । ଓଁକାର ସ୍ୱରୂପ କର୍ଣ୍ଣିକାଶୋଭିତ ମନ୍ତ୍ରାକ୍ଷରମୟ ବତିଶ ଦଳ ପଦ୍ମ ମଧ୍ୟରେ ସୁଖୋପବିଷ୍ଟ ହୋଇ କମଳାଦେବୀଙ୍କ ମୁଖକମଳ ଦର୍ଶନ

କରି ଈଷତ୍ ହାସ୍ୟ କରୁଅଛନ୍ତି । ସର୍ବାଙ୍ଗ ରତ୍ନହାର ଓ ଅଳଙ୍କାରରେ ଶୋଭିତ ଓ ମୁଖପଦ୍ମ ଜଟାମାନଙ୍କରେ ମଣ୍ଡିତ ହୋଇଅଛି । ହଳଲଙ୍ଗଳଧାରୀ ବଳଦେବଙ୍କ ପୃଷ୍ଠଦେଶରେ ସହସ୍ରଫଣାମଣ୍ଡଳ ବିସ୍ତୃତ ଛତ୍ର ପରି ଦେଖାଯାଉଅଛି । ଏହା ଦେଖି ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ପଚାରିଲେ "ଅପୌରୁଷେୟ ତରୁ-ନିର୍ମିତ-ଭଗବାନ ଚତୁର୍ଦ୍ଧାମୂର୍ତ୍ତିରେ ପ୍ରକାଶିତ ହେବେ ବୋଲି ଦୈବବାଣୀ ଶୁଣାଯାଇଥିଲା । କିନ୍ତୁ ଏକ ମୂର୍ତ୍ତି ଦୃଷ୍ଟ ହେଉଅଛନ୍ତି । ଚାରି ପ୍ରକାର ଭେଦ କାହିଁକି ଦେଖାଯାଉ ନାହିଁ ?"

ବ୍ରହ୍ମା କହିଲେ, "ନୃସିଂହାକୃତି ଆଦ୍ୟାମୂର୍ତ୍ତି । ଏଣୁ ମୋ ଅନୁଗ୍ରହରୁ ଭଗବାନ ନରସିଂହରୂପ ପ୍ରକାଶ କରିଅଛନ୍ତି । ସେ ଅଖଣ୍ଡ-ଆନନ୍ଦଦାତା, ସର୍ବଦୁଃଖ ଖଣ୍ଡନକାରୀ ସାକ୍ଷାତ୍ ପରମବ୍ରହ୍ମାକୃତି ବୋଲି ଜାଣିବ ଓ ପ୍ରତିମା ବୋଲି ମନେ କରିବ ନାହିଁ । ମନୀଷୀମାନେ ପରମବ୍ରହ୍ମଙ୍କୁ ସ୍ୱଭାବତଃ ଦାରୁ ବୋଲି କହନ୍ତି ଏବଂ ଚତୁର୍ବେଦାନୁସାରେ ଏହି ବ୍ରହ୍ମରୂପୀ ନାରାୟଣ ଦାରୁମୟ ବୋଲି ବିଦିତ । ସେ ନିଖିଳ ଜଗତର ସ୍ରଷ୍ଟା । ଶବ୍ଦବ୍ରହ୍ମ ଓ ପରମବ୍ରହ୍ମ ଏହି ଉଭୟର କିଛି ମାତ୍ର ପ୍ରଭେଦ ନାହିଁ । ପ୍ରଳୟକାଳରେ ଏକମାତ୍ର ବ୍ରହ୍ମହିଁ ବିରାଜିତ ଥାନ୍ତି । କେବଳ ସୃଷ୍ଟି ପ୍ରାରମ୍ଭରେ ଭେଦ ଉପସ୍ଥିତ ହୁଏ । ଶବ୍ଦ ଏବଂ ଶବ୍ଦାର୍ଥ ଉଭୟେ ପରସ୍ପରକୁ ଅପେକ୍ଷା କରନ୍ତି । ଅର୍ଥାଭାବରେ କୌଣସି ଶବ୍ଦ ନାହିଁ ଏବଂ ଶବ୍ଦ ଅଭାବରେ କୌଣସି ଅର୍ଥ ମଧ୍ୟ ନାହିଁ । ଚତୁର୍ବେଦହିଁ ଶବ୍ଦ ଓ ଅର୍ଥମୟ । ହଳଧାରୀ ବଳଦେବ ଋକ୍‌ବେଦରୂପୀ, ନୃସିଂହଦେବ ସାମବେଦରୂପୀ, ସୁଭଦ୍ରା ଦେବୀ ଯଜୁର୍ବେଦରୂପିଣୀ ଓ ସୁଦର୍ଶନ ଚକ୍ର ଅଥର୍ବବେଦରୂପୀ ବୋଲି କଥିତ । ଭଗବାନଙ୍କ ବିଗ୍ରହରେ ଚାରି ପ୍ରକାର ଭେଦ ଅଛି ଏବଂ ଅଭେଦ ବୁଦ୍ଧିରେ ଏହା ପଦାର୍ଥର ଏକ ସମଷ୍ଟି ମାତ୍ର । ତେଣୁ ତୁମ୍ଭର ସନ୍ଦେହ କରିବାର କୌଣସି କାରଣ ନାହିଁ । ଏକମାତ୍ର ଭଗବାନ ବ୍ରହ୍ମରୂପରେ ପ୍ରକାଶିତ ହୁଅନ୍ତି । ଅନ୍ୟାନ୍ୟ ଅବତାର ମଧ୍ୟ ଏହି ନିୟମରେ ପୃଥକ୍ ପୃଥକ୍ ହୁଏ । ଜଗନ୍ନାଥ ଦେବ ସର୍ବରୂପ ଓ ସର୍ବ ମନ୍ତ୍ରମୟ । ଯେ ଯେଉଁ ଉଦ୍ଦେଶ୍ୟରେ ଆରାଧନା କରେ, ସେ ସେହିପରି ଫଳ ପାଏ । ତୁମ୍ଭ ଅଭିଳାଷ ଅନୁରୂପ ଚତୁର୍ବର୍ଗ ଫଳ ଲାଭ ପାଇଁ ମୋ ପ୍ରଦତ୍ତ ମନ୍ତ୍ରଦ୍ୱାରା ଏହାଙ୍କୁ ପୂଜା କର । ଭଗବାନ ନିଶ୍ଚୟ ପ୍ରୀତ ହେବେ ।

ନୀଳାଚଳସ୍ଥ ଦାରୁମୟ ବିଷ୍ଣୁଙ୍କୁ ଅର୍ଚ୍ଚନା କଲେ ଯଜ୍ଞ, ତୀର୍ଥ, ବ୍ରତ, ଦାନ ଓ ତପସ୍ୟାର ପ୍ରୟୋଜନ ନାହିଁ । ଆହୁରି ମଧ୍ୟ ସିନ୍ଧୁକୂଳରେ ନୀଳାଚଳସ୍ଥିତ ଅକ୍ଷୟବଟ ମୂଳରେ ଏହି ଦାରୁମୟ ବ୍ରହ୍ମଙ୍କୁ ଯେ ଦର୍ଶନ କରିବ, ତାହାର ନିଶ୍ଚୟ ମୁକ୍ତିଲାଭ ହେବ; ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ ।”

ବ୍ରହ୍ମା ଇନ୍ଦ୍ରଦ୍ୟୁମ୍ନଙ୍କୁ ଏପରି ବୁଝାଇ ଭଗବାନଙ୍କ ସେହି ସିଂହାକୃତିକୁ ନିଜ ହୃଦୟ-କମଳରେ ସ୍ଥାପନ କରି ପୂର୍ବ ରୂପ ପ୍ରକାଶ କରାଇଲେ । ଅର୍ଥାତ୍ ପୂର୍ବେ ରଥରୁ ଅବତରଣ ସମୟରେ ଯେଉଁ ସ୍ଥିର ମୂର୍ତ୍ତି ଦେଖାଯାଉଥିଲେ, ସେହିପରି ମୂର୍ତ୍ତି ଚତୁଷ୍ଟୟ ଦୃଷ୍ଟ ହେଲେ । ବ୍ରହ୍ମା ପୁରୁଷସୂକ୍ତ ମନ୍ତ୍ରରେ ସେହି ଅନାମୟ ନାରାୟଣଙ୍କୁ, ଦ୍ୱାଦଶାକ୍ଷର ମନ୍ତ୍ରରେ ବଳଦେବଙ୍କୁ, ଶ୍ରୀସୂକ୍ତ ମନ୍ତ୍ରରେ ସୁଭଦ୍ରାଙ୍କୁ ଏବଂ ଦ୍ୱାଦଶାକ୍ଷର ମନ୍ତ୍ରରେ ସୁଦର୍ଶନଙ୍କୁ ପୂଜା କରି ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ଅନୁଗ୍ରହ ପାଇଁ ପ୍ରଭୁଙ୍କୁ ନିବେଦନ କଲେ ।

---

## ସ୍ୱୟଂ ଦାରୁବିଗ୍ରହଙ୍କର ଇନ୍ଦ୍ରଦ୍ୟୁମ୍ନଙ୍କୁ ବରଦାନ ଓ ପୂଜାଉତ୍ସବାଦି ବର୍ଣ୍ଣନ

ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ବ୍ରହ୍ମା ପ୍ରାର୍ଥନା କଲେ କି, “ହେ ଦେବଦେବେଶ ! ଏହି ଇନ୍ଦ୍ରଦ୍ୟୁମ୍ନ ଆପଣଙ୍କୁ ଭକ୍ତିସହକାରେ ଆରାଧନା କରିବାରେ ତାଙ୍କର ସହସ୍ରଜନ୍ମ ଅତୀତ ହେଲାଣି । ଅଦ୍ୟାବଧି ଆପଣଙ୍କ ଦର୍ଶନ ପାଇ ନ ଥିଲେ । ବର୍ତ୍ତମାନ ଆପଣଙ୍କ ଦର୍ଶନରେ ସେ କିପରି ମୁକ୍ତି ପାଇବେ ଏବଂ ଦେଶ, କାଳ, ବ୍ରତାଦି ଓ ଅନ୍ୟାନ୍ୟ ଉପଚାରାଦି-ଦ୍ୱାରା ଆପଣଙ୍କୁ ଭକ୍ତିଯୋଗରେ କିପରି ଆରାଧନା କରିବେ, ସେ ବିଷୟରେ ଦୟାକରି ଆଦେଶ ଓ ସଦୁପଦେଶ ଦିଅନ୍ତୁ । ସେ ଆପଣଙ୍କ ମୁଖପଦ୍ମନିର୍ଗତ ଆଜ୍ଞାରୂପ ଅମୃତ ରସ ପାନ କରିବାକୁ ଇଚ୍ଛୁକ ।

ବ୍ରହ୍ମାଙ୍କ ପ୍ରାର୍ଥନାନୁସାରେ ସ୍ୱୟଂ ଜଗନ୍ନାଥ ଦେବ ଦାରୁମୟ ହେଲେ ସୁଦ୍ଧା ହସି ହସି ଗମ୍ଭୀର ସ୍ୱରରେ କହିଲେ—

‘‘ଇନ୍ଦ୍ରଦ୍ୟୁମ୍ନ ! ପ୍ରସନ୍ନୋଽସ୍ମି ଭକ୍ତ୍ୟା ନିଷ୍କାମ କର୍ମଭିଃ ।
ତ୍ୱଦନ୍ୟୈର୍ନୈବହ୍ୟଦୀଶ୍ୟକ୍ଷମନ୍ତି କୈନାଦ୍ୟାପ୍ୟ-ପାର୍ଜିତା ॥

ବରଂଦଦାମି ତେ ଭୂପ ! ମୟି ଭକ୍ତିଃ ସ୍ଥିରାସ୍ତୁତେ ।
ଦତ୍ ସ୍ୱଜ୍ୟ ରତ୍ନକୋଟୀସ୍ତୁ ଜନ୍ମମାଯୃତନଂ କୃତଂ ।।
ଉଙ୍ଗେଽପ୍ୟେତସ୍ୟ ରାଜେନ୍ଦ୍ର ! ସ୍ଥାନଂ ନ ତ୍ୟଜ୍ୟତେ ମୟା ।
କାଲାନ୍ତରେଽପି ଯୋଽପ୍ୟନ୍ୟଃ ପ୍ରାସାଦଂ କାରୟିଷ୍ୟତି ।।
ତତ୍ରୈବ କୀର୍ତ୍ତିଃସାନ୍ନୂନଂ ତ୍ୱତ୍ ପ୍ରୀତ୍ୟା ତସ୍ମେ ସ୍ଥିତଃ ।
ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ସତ୍ୟମେତଦ୍ ବ୍ରବୀମିତେ ।।
ପ୍ରାସାଦ ଭଙ୍ଗେ ତତ୍ ସ୍ଥାନଂ ନ ତ୍ୟକ୍ଷ୍ୟାମି କଦାଚନ ।
ଅନେନ ଦାରୁବପୁଷା ସ୍ଥାସ୍ୟାମ୍ୟତ୍ର ପରାର୍ଦ୍ଧକଂ ।।
ଦ୍ୱିତୀୟମ୍ ପଦ୍ମଯୋନେସ୍ତୁ ଯାବତ୍ ପର ସମାପ୍ୟତେ ।
ମନୋଃ ସ୍ୱାୟମ୍ଭୁବସ୍ୟାଂଶେ ଦ୍ୱିତୀୟେତୁ ଚତୁର୍ଯୁଗେ ।।
କୃତସ୍ୟ ପ୍ରଥମେ ହ୍ୟେତତ୍ ଦୃଶ୍ୟତେ କ୍ଷୁତ୍ର ସଂସ୍ଥିତଃ ।

× × × ×

ଜୈଷ୍ଠ୍ୟାଂ ପ୍ରାତ ସ୍ତନେ କାଲେ ବ୍ରହ୍ମଣା ସହିତଂ ଚ ମାଂ ।
ରାମଂ ସୁଭଦ୍ରାଂ ସଂସ୍ନାପ୍ୟ ମମ ସାଯୁଜ୍ୟ ମାପ୍ନୁୟାତ୍ ।।
ସ୍ନାପ୍ୟମାନନ୍ତୁ ଯଃ ପଶ୍ୟେନ୍ ମାଂ ତଦା ନୃପସତ୍ତମ ।
ଦେହ ବନ୍ଧ ମବାପ୍ନୋତି ନ ପୁନଃ ସତ୍ତୁ ପୁରୁଷଃ ।।

× × × ×

ତସ୍ମାଂ ରାମଭଦ୍ରାଭ୍ୟାଂ ସ୍ନାପୟିତ୍ୱା ପୁନର୍ନୟେତ୍ ।
ଦକ୍ଷିଣାଭିମୁଖଂ ଯାନ୍ତଂ ଯୋ ମାଂ ପଶଂତିଭକ୍ତିତଃ ।।
ତଦ୍ଧ୍ରୂପ ମବାପ୍ନୋତି ମନସା ଯଦ୍ ଯଦିଚ୍ଛତି ।
ତତଃ ପଞ୍ଚଦଶାହାନ ସ୍ନାପୟିତ୍ୱାତୁ ମ ଂ ନୃପ ।।
ଅଙ୍ଗସଂ ଅବରୂପଂ ବା ନପଶ୍ୟେତ କଦାଚନ ।
ଜ୍ୟେଷ୍ଠ ସ୍ନାନ ମିଦଂ କୃତ୍ୱା ଦୃଷ୍ଟ୍ୱାବାସ ପ୍ରମୁଚ୍ୟତେ ।।
ଗୁଣ୍ଡିଗୃଖ୍ୟାଂ ମହାଯାତ୍ରାଂ ପ୍ରକୁର୍ବୀଥାଃ ମହୀଶ୍ୱର ।
ଯସ୍ୟାଃ ସଂକୀର୍ତ୍ତନା ଦେବ ନରଃ ପାପାତ୍ ପ୍ରମୁଚ୍ୟତେ ।।
ମାଘମାସସ୍ୟ ପଞ୍ଚମ୍ୟା ମଷ୍ଟମ୍ୟାଂ ଚୈବ ଶୁକ୍ଳକେ ।
ଏତେକାଳାଃ ପ୍ରଶସ୍ତାହ ଗୁଣ୍ଡିଗୃଖ୍ୟ ମହୋତ୍ସବେ ।।
ବିଶେଷାନ୍ ମୋକ୍ଷଦାଷାଢ଼ଦ୍ୱିତୀୟାପୁଷ୍ୟ ସଂଯୁତା ।
ତସ୍ୟାଂ ରଥେ ସମାରୋପ୍ୟ ରାମଂ ଚ ଭଦ୍ରାସ୍ତୁ ସହ ।।
ମହୋତ୍ସବଂ ପ୍ରକୁର୍ବ୍ବୀଥ ପ୍ରୀଣୟିତ୍ୱା ଦ୍ୱିଜୋତ୍ତମାନ୍ ।
ଗୁଣ୍ଡିଗୃ-ମଣ୍ଡପଂ ନାମ ଯତ୍ରାହମଜନଂ ପୁରା ।।

ଅଶ୍ୱମେଧ ସହସ୍ରସ୍ୟ ମହାବେଦୀ ତବାଭବତ୍ ।
ତସ୍ୟାଃପୁଣ୍ୟତମଂ ସ୍ଥାନଂ ପୃଥିବ୍ୟାଂ ନେହ ବିଦ୍ୟତେ ॥
× × × ×
ନବମେ ତୁ ସମାମ୍ନାନ୍ତଂ ଦକ୍ଷିଣାଭିମୁଖଂ ତଦା ।
ଯେ ପଶ୍ୟନ୍ତି ପ୍ରତିପଦମଶ୍ୱମେଧ କ୍ରତୋଃ ଫଳ ॥

[ଉତ୍କଳ ଖଣ୍ଡେ]

ଇତ୍ୟାଦି ୪୦ଟି ଶ୍ଳୋକରେ ପ୍ରତିମା ଇନ୍ଦ୍ରଦ୍ୟୁମ୍ନଙ୍କୁ ନିଜର ପୂଜା ଉତ୍ସବାଦି ବିଷୟ କହିଥିଲେ । ତାହାର ଅନୁବାଦ ନିମ୍ନରେ ପ୍ରଦତ୍ତ ହେଲା ।

"ହେ ଇନ୍ଦ୍ରଦ୍ୟୁମ୍ନ ! ତୁମ୍ଭର ଭକ୍ତି ଓ ନିଷ୍କାମ କର୍ମମାନଙ୍କ ଦ୍ୱାରା ମୁଁ ପ୍ରସନ୍ନ ହୋଇଅଛି । ତୁମ୍ଭ ବ୍ୟତୀତ ଅନ୍ୟ କେହି କଦାପି ଏପରି ସମ୍ପଦ ଲାଭ କରି ପାରିନାହିଁ । ହେ ଭୂପ ! ମୁଁ ତୁମ୍ଭଙ୍କୁ ଏହି ବର ଦେଉଅଛି ଯେ, ମୋ ପ୍ରତି ତୁମ୍ଭର ଅଚଳା ଭକ୍ତି ରହିବ । ଯେତେବେଳେ ତୁମ୍ଭେ କୋଟି କୋଟି ରତ୍ନ ବ୍ୟୟକରି ମୋର ମନ୍ଦିର ନିର୍ମାଣ କରିଅଛ, ତାହା ଭଗ୍ନ ହେଲେ ସୁଦ୍ଧା ମୁଁ ଉକ୍ତ ସ୍ଥାନ ପରିତ୍ୟାଗ କରିବି ନାହିଁ । କାଳାନ୍ତରରେ ଯଦି କେହି ଏ ସ୍ଥାନରେ ପ୍ରାସାଦ ନିର୍ମାଣ କରେ, ତଥାପି ତାହା ତୁମ୍ଭ କୀର୍ତ୍ତି ବୋଲି କଥିତ ହେବ । ମୁଁ ମଧ୍ୟ ତୁମ୍ଭର ଅସୀମ ପ୍ରୀତି ଯୋଗୁଁ ସେହି ମନ୍ଦିରରେ ଅବସ୍ଥାନ କରିବି । ମୁଁ ପୁନର୍ବାର ତିନିବାର ସତ୍ୟ କରି କହୁଅଛି ଯେ ଏହି ପ୍ରାସାଦ ଭଗ୍ନ ହେଲେ ମଧ୍ୟ ଏ ସ୍ଥାନ ତ୍ୟାଗ କରିବି ନାହିଁ । ବ୍ରହ୍ମାଙ୍କ ଦ୍ୱିତୀୟ ପରାର୍ଦ୍ଧକାଳ ପର୍ଯ୍ୟନ୍ତ ଏହି ଦାରୁମୟ ଶରୀରରେ ମୁଁ ଅବସ୍ଥାନ କରିବି । ସ୍ୱାୟମ୍ଭୁବ ମନୁଙ୍କ ଦ୍ୱିତୀୟ ଚତୁର୍ଯୁଗୀୟ ପ୍ରଥମ ସତ୍ୟଯୁଗର ପ୍ରଥମାଂଶରେ ତୁମ୍ଭ ଯଜ୍ଞପ୍ରଭାବ ହେତୁ ମୋର ଆବିର୍ଭାବ ହୋଇଅଛି । ଏଣୁ ଏହି ଦିନ ମୋର ଜନ୍ମଦିନ ଅଟେ । ଏହି ଦିନ ମୋର ପ୍ରତିମାଙ୍କୁ ଅଧିବାସର କର୍ମାନୁଷ୍ଠାନ ସହ ମହାସମାରୋହରେ ମହାସ୍ନାନ କରାଇବ । ମୁଁ ଦର୍ଶକମାନଙ୍କର କୋଟି କୋଟି ଜନ୍ମର ପାପରାଶିକୁ ବିନାଶ କରିବି । ହେ ରାଜେନ୍ଦ୍ର ! ଯେଉଁମାନେ ମୋର ଏହି ସ୍ନାନଯାତ୍ରା ଦର୍ଶନ କରିବେ, ସେମାନଙ୍କର ସମୁଦାୟ ତୀର୍ଥସେବା, ସକଳ ବିଧି ଯଜ୍ଞାନୁଷ୍ଠାନ ଓ ସର୍ବବିଧ ଦାନର ଫଳ ନିଶ୍ଚୟ ଲାଭ ହେବ । ଏହି ବଟ ବୃକ୍ଷର ଉତ୍ତର ଦିଗରେ ସର୍ବତୀର୍ଥମୟ ଏକ କୂପ ଅଛି । ସମ୍ପ୍ରତି ତାହା କଣ୍ଟକ ମୃତ୍ତିକାଦ୍ୱାରା ଆଚ୍ଛାଦିତ ହୋଇଅଛି । ପୂର୍ବରେ ସ୍ନାନପାଇଁ ଏହି

କୂପ ନିର୍ମାଣ କରିବା ପରେ ମୁଁ ଆବିର୍ଭୂତ ହୋଇଅଛି । ତେଣୁ
ତୁମ୍ଭେ ସମ୍ମୁଖ ସେହି କୂପକୁ ନିର୍ଣ୍ଣୟ କରି ତାହାକୁ ଆବିଷ୍କାର କର ।
ରକ୍ଷକ, କ୍ଷେତ୍ରପାଳ ଓ ଦିକ୍‌ପାଳମାନଙ୍କ ଉଦ୍ଦେଶ୍ୟରେ ଯଥାବିଧି ବଳି
ପ୍ରଦାନ ପୂର୍ବକ ଶଙ୍ଖ, କାହାଳୀ ଓ ମୁରଜାଦି ବାଦ୍ୟ ବାଦନ ସଙ୍ଗେ
ଚତୁର୍ଦ୍ଦଶୀ ତିଥିରେ ଏହି କୂପର ସଂସ୍କାର କରିବ । ଦ୍ୱିଜାତିମାନେ ସ୍ୱର୍ଣ୍ଣକୁମ୍ଭ
ଦ୍ୱାରା ସେଠାରୁ ଜଳ ଉତ୍ତୋଳନ କରିବେ ଏବଂ ସେହି ଜଳଦ୍ୱାରା
ଜ୍ୟେଷ୍ଠମାସ ପୂର୍ଣ୍ଣିମାର ପ୍ରାତଃକାଳରେ ବ୍ରହ୍ମାଙ୍କ ସହିତ ମୋତେ ବଳରାମ
ଓ ସୁଭଦ୍ରାଙ୍କୁ ସ୍ନାନ କରାଇଲେ ମୋର ସାଯୁଜ୍ୟ ମୁକ୍ତିଲାଭ ହେବ ।
ହେ ନୃପଶ୍ରେଷ୍ଠ ! ଯେଉଁମାନେ ସ୍ନାନକାଳରେ ମୋତେ ଦର୍ଶନ
କରିବେ, ସେମାନଙ୍କୁ ପୁଣି ଦେହ ବନ୍ଧନରେ ଆବଦ୍ଧ ହେବାକୁ ପଡ଼ିବ
ନାହିଁ । ହେ ରାଜନ ! ଈଶାନ ଦିଗରେ ଚନ୍ଦନ ଜଳଦ୍ୱାରା ସେଚନ
କରି ଚନ୍ଦ୍ରାତପ-ସୁଶୋଭିତ ଏକ ସୁସଜ୍ଜିତ ସୁଦୃଢ଼ ମଞ୍ଚ ନିର୍ମାଣ
କରିବ । ତଦୁପରି ବଳରାମ ଓ ସୁଭଦ୍ରାଙ୍କ ସହିତ ମୋତେ ସ୍ନାନ
କରାଇ ପୁନଶ୍ଚ ନିଜ ସ୍ଥାନକୁ ଫେରାଇବ । ମୋର ଦକ୍ଷିଣ ଅଭିମୁଖେ
ଯାତ୍ରା ସମୟରେ ଯେଉଁ ଲୋକମାନେ ମୋତେ ଭକ୍ତି ଭାବରେ ଦର୍ଶନ
କରିବେ, ସେମାନେ ମନରେ ଯାହା କାମନା କରିବେ, ସେ
ସମସ୍ତ ସିଦ୍ଧ ହେବ । ଏପରି ଭାବରେ ଦେବସ୍ନାନ ପ୍ରକ୍ରିୟା ଶେଷ
କରିବ । ପନ୍ଦର ଦିନ ପର୍ଯ୍ୟନ୍ତ ମୋର ଅଙ୍ଗରାଗ ବିହୀନ ବିରୂପ
ଅବସ୍ଥାକୁ ଯେପରି କଦାପି କେହି ଦର୍ଶନ ନ କରନ୍ତି । ସେ ପ୍ରକାର
ବ୍ୟବସ୍ଥା କରିବ । ମୋର ଏହି ଜ୍ୟେଷ୍ଠ ପୂର୍ଣ୍ଣିମା ସ୍ନାନୋତ୍ସବ ଯେଉଁମାନେ
ଭକ୍ତିସହକାରେ ଦର୍ଶନ କରିବେ ସେମାନେ ମୁକ୍ତିଲାଭ କରିବେ ।

ହେ କ୍ଷିତୀଶ୍ୱର ! ଏତଦ୍‌ଭିନ୍ନ ତୁମ୍ଭେ ମୋର ଗୁଣ୍ଡିଚା
ନାମକ ଯାତ୍ରା ଉତ୍ସବ କରିବ; ଏହି ଉତ୍ସବ ନାମ କୀର୍ତ୍ତନ
କରିବା ମାତ୍ରେ ମାନବ ନିଷ୍ପାପ ହୁଏ । ମାଘ ମାସର ଶୁକ୍ଳ ପଞ୍ଚମୀ
ଏବଂ ଚୈତ୍ର ମାସର ଶୁକ୍ଳ ଅଷ୍ଟମୀ ଗୁଣ୍ଡିଚା ମହୋତ୍ସବ ପାଇଁ ପ୍ରଶସ୍ତକାଳ
ଅଟେ । ବିଶେଷତଃ ଆଷାଢ଼ ମାସର ଶୁକ୍ଳ ଦ୍ୱିତୀୟା ତିଥିରେ ମହୋତ୍ସବ
ପ୍ରଶସ୍ତତର ଓ ମୋକ୍ଷଦାୟକ ବୋଲି ପ୍ରସିଦ୍ଧ ଅଟେ । ସେହି ଦିନ
ପ୍ରଥମତଃ ବିପ୍ରମାନଙ୍କୁ ସନ୍ତୁଷ୍ଟ କରି ରଥରେ ବଳଭଦ୍ର ଓ ସୁଭଦ୍ରାଙ୍କ
ସହିତ ମୋତେ ଆରୋହଣ କରାଇ ଗୁଣ୍ଡିଚା ମହୋତ୍ସବ କରିବ ।
ଏହି ଗୁଣ୍ଡିଚା ମଣ୍ଡପସ୍ଥାନରେ ମୁଁ ପୂର୍ବେ ଆବିର୍ଭାବ ହୋଇଥିଲି

ଏବଂ ଯେଉଁଠାରେ ତୁମ୍ଭେ ସହସ୍ର ସଂଖ୍ୟକ ଅଶ୍ୱମେଧ ଯଜ୍ଞ କରିଥିଲ ସେଠାର ମହାବେଦୀ ( ଗୁଣ୍ଡିଚା ମଣ୍ଡପକୁ )କୁ ଆମ୍ଭମାନଙ୍କୁ ରଥଯାତ୍ରରେ ନେଇଯିବ । ଏହି ସ୍ଥାନ ଅପେକ୍ଷା ପୁଣ୍ୟତମ ସ୍ଥାନ ପୃଥିବୀରେ ଅନ୍ୟତ୍ର ନାହିଁ । ତୁମ୍ଭେ ଏଥି ପୂର୍ବେ ମୋର ପ୍ରୀତି ପାଇଁ ସମାଧିଯୋଗରେ ଶତ ଶତ ବର୍ଷକାଳ ହୋମ କରିଥିଲ । ଏହି ସ୍ଥାନ ଅପେକ୍ଷା ମୋର ଅନ୍ୟତମ ପ୍ରୀତିକର ସ୍ଥାନ ଧରାତଳରେ ନାହିଁ । ସଂପ୍ରତି ତୁମ୍ଭେ ବ୍ରହ୍ମାଙ୍କ ଅନୁରୋଧରେ ମହାର୍ଘ ମନ୍ଦିର ପ୍ରତିଷ୍ଠା କରିଥିବା ଯୋଗୁ ନୀଳାଚଳ ମୋର ମହା ପ୍ରୀତି କର ସ୍ଥାନ ହୋଇଅଛି । ସେହିପରି ତୁମ୍ଭ ଅଶ୍ୱମେଧଯଜ୍ଞ ହେତୁ ମହାବେଦୀ ସ୍ଥାନ ନୃସିଂହ କ୍ଷେତ୍ର ରୂପେ ମୋର ଅତି ପ୍ରିୟ ଅଟେ । ପୁଣି ମୋର ଜନ୍ମନିଳୟ ହେତୁ ଏହି ସ୍ଥାନ ମୋର ଅଖଣ୍ଡ ପ୍ରୀତିକର ବୋଲି ଜାଣିବ । ବହୁକାଳ ମୁଁ ଏହି ସ୍ଥାନରେ ରହିଥିଲି । ତେଣୁ ସେ ସ୍ଥାନରେ ମୋର ଅସୀମ ପ୍ରୀତି ରହିଅଛି । ହେ ରାଜନ୍ ! ଏହି ବ୍ରହ୍ମା ମୋର ଆତ୍ମା ସ୍ୱରୂପ । ଏ ଯେତେବେଳେ ଏ ପ୍ରାସାଦରେ ମୋତେ ସ୍ଥାପନ କରି ଅଛନ୍ତି, ତାଙ୍କ ଅନୁରୋଧରେ ଏବଂ ତୁମ୍ଭ ଭକ୍ତି ହେତୁ ମୁଁ ଏହି ସ୍ଥାନରେ ଚିରକାଳ ଅବସ୍ଥାନ କରିବି । ଗୁଣ୍ଡିଚା ମଣ୍ଡପକୁ ନଅଦିନ ପାଇଁ ଯାତ୍ରା କରିବି ଏବଂ ସେଠାରୁ ଏହି ସ୍ଥାନକୁ ପ୍ରତ୍ୟାବର୍ତ୍ତନ କରିବି । ସେଠାରେ ଯେଉଁ ସର୍ବତୀର୍ଥମୟ ସରୋବର ଅଛି, ତୁମ୍ଭ ପ୍ରତି ଅନୁଗ୍ରହ ପ୍ରକାଶ ସ୍ୱରୂପ ତାହା ତଟରେ ମୁଁ ସାତଦିନ ଅବସ୍ଥାନ କରିବି । ସେଠାରେ ମୋର ଅବସ୍ଥିତି କାଳରେ ଯେଉଁମାନେ ମୋତେ ଦର୍ଶନ କରିବେ, ସେମାନେ ମୋ ବୈକୁଣ୍ଠଧାମକୁ ଗମନ କରିବେ । ତ୍ରିଭୁବନ ମଧ୍ୟରେ ଯେଉଁ ସାଢ଼େ ତିନି କୋଟି ତୀର୍ଥ ଅଛି, ମୋର ସାନ୍ନିଧ୍ୟ ହେତୁ ସେ ସମସ୍ତେ ସେହି ସରୋବରରେ ଉପସ୍ଥିତ ରହିବେ । ଏଣୁ ସେଠାରେ ଯଥାବିଧି ସ୍ନାନ କରି ସଭକ୍ତିରେ ଯେଉଁମାନେ ମୋତେ ଦର୍ଶନ କରିବେ, ସେମାନଙ୍କୁ ପୁଣି ମାତୃଗର୍ଭର କ୍ଳେଶ ଭୋଗ କରିବାକୁ ହେବ ନାହିଁ । ନବମ ଦିନରେ ମୁଁ ଦକ୍ଷିଣ ଅଭିମୁଖରେ ଯାତ୍ରା କରୁଥିବା ସମୟରେ ଯେଉଁମାନେ ମୋତେ ଦର୍ଶନ କରିବେ, ସେମାନେ ପ୍ରତି ପାଦକ୍ଷେପରେ ଅଶ୍ୱମେଧଯଜ୍ଞର ଫଳଭାଗୀ ହେବେ । ଇହଲୋକରେ ଇନ୍ଦ୍ରଙ୍କ ପରି ଉପଭୋଗ କରି ଦେହାନ୍ତରେ ମୋର ସାଯୁଜ୍ୟ ମୁକ୍ତି ଲାଭ କରି ପାରିବେ ।

ଏହି ପ୍ରକାରରେ ମୋର ଶୟନ ପାର୍ଶ୍ୱ—ପରିବର୍ତ୍ତନ ଉତ୍ଥାପନ, ମାର୍ଗଶିର ମାସରେ ପ୍ରାବରଣ, ପୁଷ୍ୟାସ୍ନାନ ଏବଂ ଫାଲ୍‌ଗୁନ ମାସରେ ଦୋଳଯାତ୍ରା ରୂପ ମହୋତ୍ସବ କରିବ । ଉକ୍ତ ଦୋଳଯାତ୍ରା ଓ ପୁଷ୍ୟାସ୍ନାନ ମହୋତ୍ସବରେ ମାନବମାନେ ମୋତେ ଦର୍ଶନ ଅର୍ଚ୍ଚନ ଓ ପ୍ରଣିପାତ କଲେ ପ୍ରତ୍ୟେକ କାର୍ଯ୍ୟ ପାଇଁ ଅଶ୍ୱମେଧ ଯଜ୍ଞର ଫଳଭାଗୀ ହେବେ । ଚୈତ୍ର ମାସର କୃଷ୍ଣ ତ୍ରୟୋଦଶୀରେ କାମ ପ୍ରପୂଜନ ନାମକ ଉତ୍ସବ କରିବ । ବୈଶାଖ ମାସର ଶୁକ୍ଳପକ୍ଷ ଅକ୍ଷୟ ତୃତୀୟାରେ ମୋତେ ସୁନ୍ଦରରୂପେ ଚନ୍ଦନ ଆଦି ଲେପନ କରିବ । ଯେଉଁମାନେ ମୋର ପ୍ରୀତିପାଇଁ ଉକ୍ତ ଉତ୍ସବମାନ କରିବେ, ସେମାନଙ୍କ ସକାଶେ ପ୍ରତ୍ୟେକ ଉତ୍ସବ ଚତୁର୍ବର୍ଗ ଫଳପ୍ରଦ ହେବ ।"

ଦାରୁବ୍ରହ୍ମ ଭଗବାନ ଇନ୍ଦ୍ରଦ୍ୟୁମ୍ନଙ୍କୁ ଏପରି ବରଦାନ କରି ଈଷତ ହସି ହସି ବ୍ରହ୍ମାଙ୍କୁ କହିଲେ, "ହେ ଚତୁର୍ମୁଖ ! ତୁମ୍ଭ ପ୍ରୀତି ପାଇଁ ତୁମ୍ଭର ସମସ୍ତ ଅଭୀଷ୍ଟ ସମ୍ପାଦନ କଲି । ତୁମ୍ଭର ଯାହା ଇଚ୍ଛା, ତାହା ମଧ୍ୟ ମୋର ଇଚ୍ଛା ଅଟେ । ଯେହେତୁ ତୁମ୍ଭ ଓ ମୋ ମଧ୍ୟରେ କିଛି ପ୍ରଭେଦ ନାହିଁ । ପୂର୍ବେ ତୁମ୍ଭେ ମୋ ନିକଟରେ ଯେଉଁ ମାଧବମୂର୍ତ୍ତି ଧାରଣ ପାଇଁ ପ୍ରାର୍ଥନା କରିଥିଲ, ତାହାର ପରିଣତି ସ୍ୱରୂପ ମୁଁ ଜଗନ୍ନାଥ ଦେବ ରୂପୀ ଅବତାର ମୂର୍ତ୍ତି ପରିଗ୍ରହ କରିଅଛି । ଏହି ସ୍ଥଳରେ ମୋତେ ଦର୍ଶନ ଓ ଅର୍ଚ୍ଚନା କରି ଯେ କେହି ପ୍ରାଣତ୍ୟାଗ କରିବ, ସେ ନିଶ୍ଚୟ ସଂସାରରୁ ମୁକ୍ତ ହେବ ଏବଂ ସେ କ୍ରମେ କ୍ରମେ ତୁମ୍ଭ ସହିତ ମୋର ସାଯୁଜ୍ୟ ଲାଭ କରିବ । ସଂପ୍ରତି ତୁମ୍ଭେ ସତ୍ୟଲୋକକୁ ଗମନ କର ଏବଂ ଦେବତାମାନେ ସୁରଲୋକକୁ ଗମନ କରନ୍ତୁ । ମୁଁ ତୁମ୍ଭ ଆୟୁ ମରଣକାଳ ( ଆୟୁ ଶେଷ ) ପର୍ଯ୍ୟନ୍ତ ଏହି ସ୍ଥଳରେ ଅବସ୍ଥାନ କରିବି ।"

ତଦନନ୍ତରରୁ ବ୍ରହ୍ମର୍ଷି ଓ ଦେବଗଣ ସାନନ୍ଦ ମନରେ ଶ୍ରୀଜଗନ୍ନାଥ ଦେବଙ୍କୁ ନତମସ୍ତକରେ ପ୍ରଣାମ କରି ନିଜ ନିଜ ଆଳୟକୁ ପ୍ରସ୍ଥାନ କଲେ । ସେ ସମୟରେ ପ୍ରତିମା ରୂପଧାରୀ ଜଗନ୍ନାଥ ଦେବ ମାନବଗଣଙ୍କର ଆନନ୍ଦ ଉତ୍ପାଦନ କରି ମୌନଭାବ ଅବଲମ୍ବନ କଲେ । ବିଷ୍ଣୁଭକ୍ତ, ଧର୍ମାତ୍ମା, ଦୃଢ଼ବ୍ରତ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଭଗବାନ ବ୍ରହ୍ମାଙ୍କ ପଛେ ପଛେ ଯାଉଥିଲେ ।

ମାଝ ତାଙ୍କ ଆଦେଶାନୁସାରେ ପ୍ରତନବୃତ୍ତ ହେଲେ । ସେ ସମୟରେ ବ୍ରହ୍ମା ତାହାଙ୍କୁ କହିଥିଲେ, "ହେ ରାଜନ୍ ! ସଂପ୍ରତି ତୁମ୍ଭେ ଭଗବାନଙ୍କ ସମ୍ବନ୍ଧ ଯାତ୍ରା ମହୋତ୍ସବ ସଂପୂର୍ଣ୍ଣ ରୂପରେ ସଂପାଦନ କର । ସେହି ଜଗନ୍ନାଥ ପ୍ରଭୁ ସନ୍ତୁଷ୍ଟ ହେଲେ ନିଖିଳ ଚରାଚର ପ୍ରାଣୀ ସନ୍ତୁଷ୍ଟ ହେବେ ।"

ମହାରାଜ ଇନ୍ଦ୍ରଦ୍ୟୁମ୍ନ ଭଗବାନ ବ୍ରହ୍ମାଙ୍କ ଏ ଆଜ୍ଞା ମସ୍ତକରେ ଧାରଣ କରି ନାରଦଙ୍କ ସହିତ ଜ୍ୟେଷ୍ଠସ୍ନାନାଦି ମହୋତ୍ସବ ଯଥାବିଧି ସଂପନ୍ନ କଲେ ।

---

## ଗାଲମାଧବ କଥା

ଦାରୁବ୍ରହ୍ମ ମୂର୍ତ୍ତିଙ୍କ ଆଦେଶାନୁସାରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ ଜଗନ୍ନାଥ ଦେବଙ୍କ ସମ୍ବନ୍ଧ ଯାତ୍ରା ଉତ୍ସବାଦି ସମ୍ପାଦନ ଏବଂ ବହୁ ଉପଚାରରେ ପ୍ରଭୁଙ୍କ ଅର୍ଚ୍ଚନା ଦ୍ୱାରା ସକଳ ଅଭିଷ୍ଟ ଫଳ ଲାଭ କରିଥିଲେ । ଦାରୁପ୍ରତିମା ଇନ୍ଦ୍ରଦ୍ୟୁମ୍ନଙ୍କୁ ପୂଜା ଉତ୍ସବାଦି ବିଷୟରେ ଯେପରି ଆଜ୍ଞା ଦେଇଥିଲେ, ଇନ୍ଦ୍ରଦ୍ୟୁମ୍ନ ତଦନୁସାରେ ତାହାର ସମ୍ୟକ ସମ୍ପାଦନ ପାଇଁ ମହାଯଶା ଧର୍ମିଷ୍ଠ ଗାଲମାଧବଙ୍କୁ ଯଥୋଚିତ ସୁମଧୁର ବଚନରେ ବୁଝାଇ କହିଥିଲେ, "ହେ ରାଜନ ! ଆପଣ ଧର୍ମନିଷ୍ଠ ଓ ଜ୍ଞାନବାନ ଅଟନ୍ତି । ଆପଣ ଜାଣନ୍ତି ଯେ, ଭଗବାନ କୌଣସି ବ୍ୟକ୍ତିବିଶେଷଙ୍କ ଶିକ୍ଷା ସକାଶେ ଉପଦେଶ ଦିଅନ୍ତି ନାହିଁ । ସେ ଗୁରୁଭାବରେ ଯେଉଁ ଆଦେଶ ଦେଇଛନ୍ତି, ତାହା ଅଖିଳ ବିଶ୍ୱବାସୀ ଶିଷ୍ୟ ଭାବରେ ଉପଦେଶ ଗ୍ରହଣ କରିବା ବିଧେୟ । ଦେଖନ୍ତୁ, ପ୍ରଭୁ ମୋ ଅନୁଗ୍ରହ ପାଇଁ ଏ ସ୍ଥଳରେ ଅବତୀର୍ଣ୍ଣ ହୋଇଛନ୍ତି ସତ୍ୟ, କିନ୍ତୁ ନିଖିଳ ଜୀବମାନଙ୍କ ଉଦ୍ଧାର ପାଇଁ ଅସୀମ ସମୟ ପର୍ଯ୍ୟନ୍ତ ଏହି ନୀଳାଚଳରେ ଅବସ୍ଥାନ କରିବେ । ତେଣୁ ହେ ରାଜନ ! ଆପଣ ଭକ୍ତି ଓ ଶ୍ରଦ୍ଧାରେ ଭଗବାନଙ୍କ ଆଜ୍ଞାନୁରୂପ ଯାତ୍ରାଦି ଉତ୍ସବ ଓ ଅର୍ଚ୍ଚନା ସମ୍ପାଦନ କରନ୍ତୁ । ଆପଣ ଏହାଙ୍କୁ କଦାପି ପ୍ରତିମା ଜ୍ଞାନ କରିବେ ନାହିଁ । ଏହାଙ୍କୁ ଉପାସନା କରି ଯେ ଯେପରି କାମନା କରେ, ସେ ସେପରି ଫଳ ଲାଭ କରେ । ଅତଏବ ପ୍ରଭୁଙ୍କ ଆଜ୍ଞାନୁସାରେ ଆପଣ ଯଥାବିଧି ଭୋଗ ଓ ମୋକ୍ଷଦାତା ଭଗବାନଙ୍କୁ ପୁରବାସୀ ପ୍ରଜାଗଣଙ୍କ ସହିତ

ଯାହା ସମୂହ ସମ୍ପାଦନ କରିବେ । ହେ ରାଜେନ୍ଦ୍ର ! ଆପଣ ପ୍ରତିଦିନ ତିସନ୍ଧ୍ୟାରେ ଉପଚାର ସମୂହ ଦ୍ୱାରା ପୂଜା କରିବାରେ ପ୍ରବୃତ୍ତ ହୁଅନ୍ତୁ ଓ ଆରାଧନା କରନ୍ତୁ । ତାହାହେଲେ ପରମ ନିର୍ବାଣ ପ୍ରାପ୍ତ ହେବେ ।"

ନୀଳମାଧବ ଇନ୍ଦ୍ରଦ୍ୟୁମ୍ନଙ୍କ ଆଦେଶକୁ ଶିରୋଧାର୍ଯ୍ୟ କରି ଦାରୁ-ବ୍ରହ୍ମଙ୍କ ଅର୍ଚ୍ଚନା ଓ ମହୋତ୍ସବାଦି ଯଥାବିଧି ସମ୍ପାଦନ କରିବା ପାଇଁ ପ୍ରବୃତ୍ତ ହେଲେ । ପରେ ରାଜର୍ଷି ଇନ୍ଦ୍ରଦ୍ୟୁମ୍ନ ଭଗବାନ୍ ପୁରୁଷୋତ୍ତମଙ୍କୁ ପୂଜାଦିଦ୍ୱାରା ପ୍ରସନ୍ନ କରି ନାରଦଙ୍କ ସହିତ ବ୍ରହ୍ମଲୋକକୁ ଗମନ କଲେ ।

---

## ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଦାରୁବିଗ୍ରହ ନିର୍ମାଣ କାଳ କଥା

ଭଗବାନ୍ ବିଷ୍ଣୁ ଓ ମାର୍କଣ୍ଡେୟ ମୁନିଙ୍କ କଥୋପକଥନ ବିଷୟରେ ପୂର୍ବରେ ଏହା ବର୍ଣ୍ଣିତ ଅଛି :—

"ମୁନେ କ୍ଷେତ୍ର ମିଦଂ ଚୈତଂ ଶାଶ୍ୱତଂ ମେ ବିଭାବୟ ।
ନ ସୃଷ୍ଟି ପ୍ରଳୟୌ ବତ୍ର ବିଦ୍ୟେତେ ନାତ୍ର ସଂଶୟ ॥"

ଅର୍ଥାତ୍:— ହେ ମୁନେ ! ମୋର ଏହି ପବିତ୍ର କ୍ଷେତ୍ରକୁ ଶାଶ୍ୱତ ଅର୍ଥାତ୍ ନିତ୍ୟବୋଲି ଚିନ୍ତା କର । ଏହି କ୍ଷେତ୍ରରେ ସୃଷ୍ଟି ଓ ପ୍ରଳୟ ହୁଏ ନାହିଁ ।

ଏହି ସବୁ ବାକ୍ୟରୁ ଏହି ପୁରୁଷୋତ୍ତମ କ୍ଷେତ୍ର "ଶାଶ୍ୱତ" ହେଲୁ ଭଗବାନ ମହା ବିଷ୍ଣୁ ଏଠାରେ ନିତ୍ୟ ବିରାଜିତ ଥିବା କଥା ନିଶ୍ଚିତ ଅଟେ । ପୂର୍ବରେ କଥିତ ହୋଇଅଛି ଯେ, ଏହି ପୁରୁଷୋତ୍ତମ କ୍ଷେତ୍ରରେ ମହାବିଷ୍ଣୁ ନୀଳମାଧବ ମୂର୍ତ୍ତି ପରିଗ୍ରହ କରି ଚିର ବିଦ୍ୟମାନ ଥିଲେ ଏବଂ ତାଙ୍କ ଇଚ୍ଛାରୁ ସେ ବ୍ରହ୍ମାଙ୍କ ପ୍ରଥମ ପରାର୍ଦ୍ଧର ଅନ୍ତେ ଦ୍ୱିତୀୟ ପରାର୍ଦ୍ଧରେ ଅନ୍ତର୍ହିତ ହେଲେ । ପରେ ପ୍ରଭୁଙ୍କ ଇଚ୍ଛାନୁସାରେ ଆକାଶବାଣୀ ଅନୁଯାୟୀ ଇନ୍ଦ୍ରଦ୍ୟୁମ୍ନ ସହସ୍ର ଅଶ୍ୱମେଧ ଯଜ୍ଞ କରିବାରୁ ଦାରୁବିଗ୍ରହ ଧାରଣ କରି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଚତୁର୍ଦ୍ଧା ରୂପରେ ଆବିର୍ଭୂତ ହୋଇଛନ୍ତି । ଏହି ଆବିର୍ଭାବ ସମୟ ସମ୍ବନ୍ଧରେ ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି ଯେ :—

"ମନୋଃ ସ୍ୱାୟମ୍ଭୁବ ସ୍ୟାଂଶେ ଦ୍ୱିତୀୟେତୁ ଚତୁର୍ଯୁଗେ ।
କୃତସ୍ୟ ପ୍ରଥମେ ହ୍ୟତ୍ର ଦ୍ୱିତୀୟେ ଚ ତତ୍ର ସଂସ୍ଥିତଃ ।।
ଜ୍ୟୈଷ୍ଠାମାସ୍ୟାଂ ଭବତୀର୍ଣ୍ଣ ସ୍ତତ୍ ପୂର୍ଣ୍ଣାଂ ଜଗନ୍ନିବାସକଂ ।"

[ ଉତ୍କଳ ଖଣ୍ଡେ ]

**ଅର୍ଥାତ:**—ଦାରୁବ୍ରହ୍ମ ଚତୁର୍ଦ୍ଧା ମୂର୍ତ୍ତିଙ୍କ ପ୍ରଥମ ଆବିର୍ଭାବ ସ୍ୱାୟଂଭୁବମନୁଙ୍କ ଦ୍ୱିତୀୟ ଚତୁର୍ଯୁଗର ପ୍ରଥମ ସତ୍ୟଯୁଗରେ ପ୍ରଥମ ଜ୍ୟେଷ୍ଠ ପୂର୍ଣ୍ଣିମା ଦିନରେ ହୋଇଥିଲା । ବର୍ତ୍ତମାନ ଶ୍ୱେତବାରାହ କଳ୍ପର ଚତୁର୍ଦ୍ଦଶମନୁଙ୍କ ମଧ୍ୟରେ ପ୍ରଥମ ସ୍ୱାୟଂଭୁବ ମନୁ, ଦ୍ୱିତୀୟ ସ୍ୱାରୋଚିଷ, ତୃତୀୟ ଉତ୍ତମୌଜା, ଚତୁର୍ଥ ତାମସ, ପଞ୍ଚମ ରୈବତ, ଷଷ୍ଠ ଚାକ୍ଷୁଷ ଓ ସପ୍ତମ ବୈବସ୍ୱତ ମନୁ । ସଂପ୍ରତି ଏହି ବୈବସ୍ୱତ ମନୁଙ୍କ ସପ୍ତ ବିଂଶତି ଚତୁର୍ଯୁଗ ଗତ ହୋଇ ଅଷ୍ଟାବିଂଶତି ଚତୁର୍ଯୁଗର ସତ୍ୟ ତ୍ରେତା ଓ ଦ୍ୱାପରର ଶେଷପରେ କଳିଯୁଗର ୫୦୫୩ ବର୍ଷ ଭୋଗ ହୋଇଅଛି । ପ୍ରତ୍ୟେକ ଚତୁର୍ଯୁଗର ଭୋଗକାଳ ନିମ୍ନୋକ୍ତ ମତେ ୪୩୨୦୦୦୦ ( ତେୟାଳିଶ ଲକ୍ଷ କୋଡ଼ିଏ ହଜାର ) ବର୍ଷ ହୁଏ ।

| ଯଥା :— | | | |
|---|---|---|---|
| | ସତ୍ୟ ଯୁଗାବ୍ଦାଃ | ୧୭୨୮୦୦୦ | ବର୍ଷ |
| | ତ୍ରେତା ଯୁଗାବ୍ଦାଃ | ୧୨୯୬୦୦୦ | ,, |
| | ଦ୍ୱାପର ଯୁଗାବ୍ଦାଃ | ୮୬୪୦୦୦ | ,, |
| | କଳି ଯୁଗାବ୍ଦାଃ | ୪୩୨୦୦୦ | ,, |
| | ସର୍ବମୋଟ | ୪୩୨୦୦୦୦ | ବର୍ଷ |

ଏପରି ୭୧ ( ଏକସ୍ତରି ) ଚତୁର୍ଯୁଗ ( ଗଣ୍ଡା )ରେ ଏକ ମନୁଙ୍କ ସମସ୍ତ ଭୋଗ ହୁଏ । ପଞ୍ଜିକାକାରମାନେ ସ୍ୱାୟଂଭୁବମନୁଙ୍କ ପ୍ରାରମ୍ଭ କାଳରୁ ଆଜ ପର୍ଯ୍ୟନ୍ତ ୧୯୭୨୯୪୯୦୫୩ ବର୍ଷ ( ଏକଶତ ଶତାନବେ କୋଟି ଅଣତିରିଶ ଲକ୍ଷ ଅଣଚାଶ ହଜାର ତେପନ ) ବର୍ଷ ଭୋଗ ହୋଇଥିବା ଗଣନା କରି ଲେଖି ଅଛନ୍ତି । ଏଥିରୁ ସ୍ୱାୟଂଭୁବମନୁଙ୍କ ପ୍ରଥମ ଚତୁର୍ଯୁଗ ବାବଦ୍ ୪୩୨୦୦୦୦ ବର୍ଷ ବାଦ ଯାଇ ଏ ମନୁଙ୍କ ଦ୍ୱିତୀୟ ଚତୁର୍ଯୁଗର ସତ୍ୟଯୁଗରୁ ଆରମ୍ଭ କରି ବର୍ତ୍ତମାନ ୧୯୬୮୬୨୯୦୫୩ ( ଏକଶତ ଛୟାନବେ କୋଟି ଛୟାଶି ଲକ୍ଷ ଅଣତିରିଶ ହଜାର ତେପନ ) ବର୍ଷ ବର୍ତ୍ତମାନ ସମୟକୁ ଦାରୁବ୍ରହ୍ମ ଚତୁର୍ଦ୍ଧା ମୂର୍ତ୍ତିଙ୍କ

ଆବିର୍ଭାବ କାଳ ଗଣନାସିଦ୍ଧ ଅଟେ । ଏହାଙ୍କ ପ୍ରଥମ ଆବିର୍ଭାବ ପରେ ଏମାନଙ୍କ ସ୍ଥାପନ ପାଇଁ ମହାରାଜ ଇନ୍ଦ୍ରଦ୍ୟୁମ୍ନ ନୀଳାଚଳ ଶିଖରରେ ମନ୍ଦିର ନିର୍ମାଣ କରାଇଥିଲେ । ବ୍ରହ୍ମାଙ୍କ ଆଜ୍ଞାନୁସାରେ ନାରଦଙ୍କ ସହିତ ଇନ୍ଦ୍ରଦ୍ୟୁମ୍ନ ଏହି ନୀଳାଚଳ ଶିଖରସ୍ଥ ମନ୍ଦିରରେ ଉକ୍ତ ଦାରୁବ୍ରହ୍ମ ଚତୁର୍ଦ୍ଧା ବିଗ୍ରହଙ୍କ ପ୍ରତିଷ୍ଠା ପାଇଁ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବା ସକାଶେ ବ୍ରହ୍ମଲୋକକୁ ଗମନ କରିଥିଲେ । ବ୍ରହ୍ମାଙ୍କୁ ଅନୁସରଣ କରି ତାଙ୍କଠାରୁ ପ୍ରତିଷ୍ଠା ପାଇଁ ଆଗମନର ପ୍ରତିଶ୍ରୁତି ଲାଭ କରି ଫେରିବା ବେଳକୁ ସ୍ୱାୟଂଭୁବ ମନୁଙ୍କ ଶାସନ କାଳ ଶେଷ ହୋଇ ସ୍ୱାରୋଚିଷ ମନୁଙ୍କ ଶାସନ କାଳ ଉପସ୍ଥିତ ହୋଇଥିଲା । ସ୍ୱୟଂ ବ୍ରହ୍ମା ଦେବଗଣ ଓ ଋଷିଗଣଙ୍କ ସହିତ ଆସି ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ ନୀଳାଚଳ ଶିଖରୋପରି ନିର୍ମିତ ମନ୍ଦିରରେ ଉକ୍ତ ଚତୁର୍ଦ୍ଧା ଦାରୁବିଗ୍ରହମାନଙ୍କୁ ସ୍ୱୟଂ ପ୍ରତିଷ୍ଠା କଲେ । ତାହାର କାଳ ବିଷୟରେ ଉଲ୍ଲେଖ ଅଛି ଯେ :—

> "ମନ୍ୱନ୍ତରଂ ବ୍ୟତୀତଂ ବୈ ପ୍ରଥମଂ ସାର୍ଦ୍ଧ ଭୂଂ ସୁର ।
> ଇନ୍ଦ୍ରଦ୍ୟୁମ୍ନେନ ସହିତା ସ୍ତନ ଗତ୍ୱା ସୁରୋତ୍ତମାଃ ॥
> ପ୍ରାସାଦ ପ୍ରତିମା-ନାଞ୍ଚ ସ୍ଥିତାତ୍ତଂ ସ୍ୱାମ୍ୟ ମସ୍ୟ ବୈ ।"

ଏବଂ ଚ :—

> "ସ୍ୱାରୋଚିଷୋନ୍ତରରେ ଚୈବ ଆବିର୍ଭୂତଃ କୃପାନିଧିଃ ।
> ବୈଶାଖସ୍ୟାମଳେ ପକ୍ଷେ ଅଷ୍ଟମ୍ୟାଂ ପୁଷ୍ୟ ଯୋ ଗତଃ ॥
> କୃତ୍ୱା ପ୍ରତିଷ୍ଠାଂ ହୋ ବିପ୍ରାଃ ଶୋଭନେ ଗୁରୁ ବାସରେ ।
> ତଦ୍ଦିନଂ ସୁମହତ୍ ପୁଣ୍ୟଂ ସର୍ବପାପ ପ୍ରଣାସନଂ । ଇତ୍ୟାଦି ।
> [ ବ୍ରହ୍ମ ବାକ୍ୟଂ-ଉତ୍କଳ ଖଣ୍ଡେ ]

ଅର୍ଥାତ୍ ସ୍ୱାରୋଚିଷ ମନୁଙ୍କ ପ୍ରଥମ ସତ୍ୟଯୁଗର ବୈଶାଖ ଶୁକ୍ଳପକ୍ଷ ଅଷ୍ଟମୀ ତିଥି ପୁଷ୍ୟା ନକ୍ଷତ୍ରଯୁକ୍ତ ଗୁରୁବାରରେ ସ୍ୱୟଂ ବ୍ରହ୍ମା ଉକ୍ତ ଦାରୁବିଗ୍ରହମାନଙ୍କୁ ନୀଳାଚଳସ୍ଥ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ଯାହା ବର୍ତ୍ତମାନ ସମୟକୁ ନିମ୍ନ ଗଣନାନୁସାରେ :—

| | |
|---|---|
| ପୂର୍ବୋକ୍ତ ଦାରୁବିଗ୍ରହମାନଙ୍କ ନିର୍ମାଣ କାଳ ବା ଆବିର୍ଭାବ | ୧୯୭-୮୭-୨୯୦୫୩ ବର୍ଷରୁ |
| ସ୍ୱାୟଂଭୁବ ମନୁଙ୍କ ଅବଶିଷ୍ଟ ୭୦ ଚତୁର୍ଯୁଗର କାଳ ହେଉଅଛି ୪୩୨୦୦୦୦ × ୭୦ | ୩୦୨୪୦୦୦୦୦ ବାଦ୍ ଯାଇ |

ଅବଶିଷ୍ଟ=୧୬୭୬୨୨୯୦୫୩ ବର୍ଷ

ଅର୍ଥାତ୍ ଆଜକୁ ଏକଶତ ଛଅଷଠୀ କୋଟି ବାଷଠୀ ଲକ୍ଷ ଊନବିଂଶ ହେଁପନ ବର୍ଷ ପୂର୍ବେ ନୀଳାଚଳଶିଖରସ୍ଥ ମନ୍ଦିରରେ ବ୍ରହ୍ମାଙ୍କ ଦ୍ୱାରା ଦାରୁ ବିଗ୍ରହମାନଙ୍କ ପ୍ରତିଷ୍ଠା ହୋଇଅଛି ।

---

## ମନ୍ଦିରର ଉଚ୍ଚତା ଓ ନିର୍ମାଣ ବିଷୟ କଥା

ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ସେ ସମୟରେ ନିର୍ମିତ ଉକ୍ତ ମନ୍ଦିରର ଉଚ୍ଚତା:—

"ସହସ୍ର କର ମୁଚ୍ଛ୍ରିତଂ"

[ ଉତ୍କଳ ଖଣ୍ଡେ ]

ଅର୍ଥାତ୍ :—ଏକ ସହସ୍ର ହସ୍ତ ପରିମିତ ଥିଲା । ଯାହା ଆଜ-କାଲର ଫୁଟ ହିସାବରେ ୧୫୦୦ ଫୁଟ ଉଚ୍ଚ ହେବ ।

ଏ ମନ୍ଦିରର ନିର୍ମାଣରେ ମହାରାଜ ଇନ୍ଦ୍ରଦ୍ୟୁମ୍ନ କୋଟି କୋଟି ରତ୍ନ ବ୍ୟୟ କରିଥିଲେ; ଯାହାର କି ଇୟତ୍ତା ନାହିଁ । ଏହା ବହୁ କୋଟି ବର୍ଷର କଥା । ତା ପରେ ଏହା ଅନେକ ଥର ସଂସ୍କାର ଓ ପୁନର୍ନିର୍ମାଣ ହୋଇଥିବା କଥା ସ୍ୱାଭାବିକ । ବର୍ତ୍ତମାନ ଏହି ନୀଳାଚଳରେ ଯେଉଁ ଜଗନ୍ନାଥ ମନ୍ଦିର ଅର୍ଥାତ୍ ବଡ଼ଦେଉଳ ଅଛି, ତାହାର ଉଚ୍ଚତା ୧୯୨ ଫୁଟ ଅର୍ଥାତ୍ ୧୨୮ ହାତ ଅଟେ । ଆଧୁନିକ ଐତିହାସିକମାନେ କହନ୍ତି ଯେ, ବର୍ତ୍ତମାନ ମନ୍ଦିରକୁ ଉତ୍କଳ ସମ୍ରାଟ ଅନଙ୍ଗଭୀମଦେବ ନିର୍ମାଣ କରାଇଥିଲେ; ଯହିଁରେ ତାଙ୍କର ୧୨½ ( ସାଢ଼େ ବାର ) ଲକ୍ଷ ମାଢ଼ ସୁନା ଓ ୨½ (ଅଢ଼ାଇ) ଲକ୍ଷ ମାଢ଼ ସୁନାର ରତ୍ନ ଏପରି ସବୁରେ ପନ୍ଦର ଲକ୍ଷ ମାଢ଼ ସୁନା ଏ ମନ୍ଦିର ଓ ଜଗମୋହନ ନିର୍ମାଣ କରିବାରେ ବ୍ୟୟିତ ହୋଇଥିଲା । ପ୍ରତି ମାଢ଼ର ଓଜନ ଅର୍ଦ୍ଧ ତୋଳାର ସମାନ ଅଟେ । ସୁତରାଂ ସାଢ଼େ ସାତ ଲକ୍ଷ ତୋଳା ସୁନା ଅର୍ଥାତ୍ ବର୍ତ୍ତମାନ ମୂଲ୍ୟାନୁସାରେ ୭½ ( ସାଢ଼େ ସାତ ) କୋଟି ଟଙ୍କା ବ୍ୟୟିତ ହୋଇଥିବା ପ୍ରକାଶ । ଅନଙ୍ଗଭୀମଦେବ ଖ୍ରୀଷ୍ଟ ଦ୍ୱାଦଶ ଶତାବ୍ଦୀର ଲୋକ । ତେଣୁ ଏହା ଆଠ ଶତ ବର୍ଷ ପୂର୍ବେ ନିର୍ମାଣ ହୋଇଥିବା ଆଧୁନିକ ଐତି-ହାସିକମାନେ କହନ୍ତି । ପୁଣି କହନ୍ତି ଯେ, ଅନଙ୍ଗଭୀମଦେବଙ୍କ ପୂର୍ବରେ ସ୍ୱାଧୀନ ଉତ୍କଳର କେଶରୀବଂଶର ପ୍ରଥମ ରାଜା ଜନ୍ମେଜୟଙ୍କ ପୁତ୍ର



ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ମାନଚିତ୍ର
ଉତ୍ତର
ଭାର୍ଗବୀ ନଦୀ
ଅଠରନଳା
ପଶ୍ଚିମ
ପୂର୍ବ
ଦକ୍ଷିଣ
ତୀର୍ଥରାଜ ମହୋଦଧି
ସମୁଦ୍ର
ସମୁଦ୍ର
୧-ମହାଲକ୍ଷ୍ମୀ; ୨-ବିମଳା; ୩-ବଟମଙ୍ଗଳା; ୪-ଦକ୍ଷୀଣକାଳୀ; ୫-ଚାମୁଣ୍ଡା;
୬-ଘାଟମଙ୍ଗଳା; ୭-ଅଲମ୍ବା; ୮-ଅର୍ଦ୍ଧାଶନି; ୯-ଈଶାନେଶ୍ୱର;
୧୦-ବଟେଶ୍ୱର; ୧୧-କ୍ଷେତ୍ରପାଳ; ୧୨-କପାଳମୋଚନ; ୧୩-ଯମେଶ୍ୱର;
୧୪-ଲୋକନାଥ; ୧୫-ନୀଳକଣ୍ଠ; ୧୬-ବିଲ୍ୱେଶ୍ୱର; ୧୭-ଶ୍ରୀମନ୍ଦିର;
୧୮-ରୋହିଣୀକୁଣ୍ଡ; ୧୯-କଳ୍ପବଟ; ୨୦-ଶ୍ୱେତଗଙ୍ଗା;
୨୧-ସ୍ୱର୍ଗଦ୍ୱାର; ୨୨-ନରେନ୍ଦ୍ର ପୁଷ୍କରିଣୀ; ୨୩-ମାର୍କଣ୍ଡେୟ;
୨୪-ମାର୍କଣ୍ଡେୟ ପୁଷ୍କରିଣୀ; ୨୫-ଇନ୍ଦ୍ରଦ୍ୟୁମ୍ନ ସରଃ;
୨୬-ଗୁଣ୍ଡିଚା ମନ୍ଦିର; ୨୭-ମରୀଚିକା;
୨୮-ଚକ୍ରତୀର୍ଥ; ୨୯-ଦଶଆ ମହାବୀର
ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ କୃତ

ଅର୍ଥାତ୍—ଶଙ୍ଖର ଉଦରଭାଗର କେତେକ ଅଂଶ ସମୁଦ୍ର ଜଳରେ ବୁଡ଼ି ରହିଅଛି । ତେଣୁ କ୍ଷେତ୍ରର ସମ୍ପର୍କ ହେତୁ ଏହି ସମୁଦ୍ର ତୀର୍ଥରାଜ ବୋଲି ପ୍ରାଧାନ୍ୟ ଲାଭ କରିଅଛି । ଏ କ୍ଷେତ୍ରର ଆକୃତି ଦକ୍ଷିଣାବର୍ତ୍ତ ଶଙ୍ଖ ପରି ଅଟେ ।

"ଭଗବାନ୍‌ପିତଂ ରୁଦ୍ରଂ କ୍ଷେତ୍ରସ୍ୱାମିତୟା ବିଭୁଃ ।
ସ୍ଥାପୟାମାସ ସର୍ବତଃ ସ୍ୱୟଂ ମଧ୍ୟେ ବ୍ୟବସ୍ଥିତଃ ॥
କପାଲମୋଚନଂ ନାମ କ୍ଷେତ୍ରପାଲଂ ଯମେଶ୍ୱରଂ ।
ମାର୍କଣ୍ଡେୟଂ ତଥେଶାନଂ ବିଲ୍ୱେଶଂ ନୀଳକଣ୍ଠକଂ ॥
ବଟମୂଲେ ବଟେଶଞ୍ଚ ଲିଙ୍ଗାନ୍ୟଷ୍ଟୌ ମହେଶିତୁଃ ।"
[ଉତ୍କଳ ଖଣ୍ଡେ]

ଅର୍ଥାତ୍—ଭଗବାନ୍ ବିଷ୍ଣୁ ରୁଦ୍ରଙ୍କୁ କ୍ଷେତ୍ରସ୍ୱାମୀରୂପେ ସବୁ ଦିଗରେ ସ୍ଥାପନ କରି ତନ୍ମଧ୍ୟରେ ସ୍ୱୟଂ ଅବସ୍ଥାନ କରିଅଛନ୍ତି; ଯଥା—(୧) କପାଳମୋଚନ, (୨) କ୍ଷେତ୍ରପାଳ, (୩) ଯମେଶ୍ୱର, (୪) ମାର୍କଣ୍ଡେୟେଶ୍ୱର, (୫) ଈଶାନେଶ୍ୱର, (୬) ବିଲ୍ୱେଶର, (୭) ନୀଳକଣ୍ଠ, (୮) ବଟମୂଳରେ ବଟେଶ୍ୱର । ଏହି ଅଷ୍ଟଲିଙ୍ଗଙ୍କୁ ଦର୍ଶନ ପୂର୍ବେ ଓ ପୂଜା କଲେ ମୁକ୍ତିଲାଭ ହୁଏ ।

ଏହି କ୍ଷେତ୍ର ବିଷ୍ଣୁଙ୍କର କଳେବର । ଏତନ୍ମଧ୍ୟରେ ଅନ୍ତର୍ବେଦୀ ସ୍ଥାନ ତାହାଙ୍କ ହୃଦସ୍ଥ ଅଟେ । ଏହି ଅନ୍ତର୍ବେଦୀ ରକ୍ଷାପାଇଁ ଅଷ୍ଟଶକ୍ତି ରହିଅଛନ୍ତି; ଯଥା:—(୧) ବଟମୂଳରେ ମଙ୍ଗଳା, (୨) ପଶ୍ଚିମରେ ବିମଳା, (୩) ଶଙ୍ଖର ପୃଷ୍ଠଭାଗରେ ସର୍ବମଙ୍ଗଳା, (୪) ଉତ୍ତର ଦିଗରେ ଅର୍ଦ୍ଧାଶନୀ ( ମାଉସୀ ମା ), (୫) ଆଲମ୍ବା ( ଆଲମ ଚଣ୍ଡି ), (୬) ଦକ୍ଷିଣଦିଗରେ କାଳରାତ୍ରି, (୭) ପୂର୍ବରେ ମରୀଚିକା, (୮) କାଳରାତ୍ରିର ପଶ୍ଚାଦ୍‌ଭାଗରେ ଚଣ୍ଡରୂପା ( ଚାମୁଣ୍ଡା ) ଅଛନ୍ତି । ଏହି ଅଷ୍ଟଶକ୍ତିଙ୍କ ଦ୍ୱାରା ଅନ୍ତର୍ବେଦୀ ପରିରକ୍ଷିତ ହୋଇଅଛି । ଏହି ଅଷ୍ଟମୂର୍ତ୍ତିଙ୍କର ଦର୍ଶନ ଓ ନାମକୀର୍ତ୍ତନ କଲେ ସକଳ ପାପ ନାଶ ହୁଏ ଓ ଅଶ୍ୱମେଧଯଜ୍ଞର ଫଳ ଲାଭ ହୁଏ । ଏହି ଶଙ୍ଖାକୃତି କ୍ଷେତ୍ରର ପଶ୍ଚିମସୀମା କ୍ଷେତ୍ରର ମସ୍ତକପରି ଅଟେ ଏବଂ ଅଗ୍ରଭାଗ ଅର୍ଥାତ୍ ପୂର୍ବରେ ନୀଳକଣ୍ଠ ନାମକ ଶିବ ଅଛନ୍ତି । ଏହାଙ୍କ ଦକ୍ଷିଣ-ପୂର୍ବକୁ ବିଲ୍ୱେଶ୍ୱର ନାମକ ଶମ୍ଭୁ ଅଛନ୍ତି । ଏପରି ଭାବରେ କ୍ଷେତ୍ରର ସୀମା କଥିତ ହେଲା । ଏହି ଶଙ୍ଖାକାର

କ୍ଷେତ୍ରର ନାଭିଦେଶରେ ରୋହିଣୀକୁଣ୍ଡ, ଅକ୍ଷୟବଟ ଓ ଦାରୁବ୍ରହ୍ମ ଅଛନ୍ତି ଏବଂ କପାଳମୋଚନଠାରୁ ଅର୍ଦ୍ଧାଶଣୀ ପର୍ଯ୍ୟନ୍ତ ସ୍ଥାନ ଶଙ୍ଖର ମଧ୍ୟଭାଗ ବୋଲି କଥିତ ଅଟେ । ଶଙ୍ଖର ତୃତୀୟାବର୍ତ୍ତ ସୀମା ମଧ୍ୟରେ ବିମଳାଶକ୍ତି ରହିଅଛନ୍ତି । ବଟ ଓ ମହୋଦଧି ମଧ୍ୟରେ ପୂର୍ବମୁଖ କରି ରହିଥିବା ମତ୍ସ୍ୟାବତାର ଓ ପଶ୍ଚିମମୁଖ କରି ରହିଥିବା ଶ୍ୱେତମାଧବଙ୍କ ସ୍ଥାନ ଚକ୍ରମଧ୍ୟ ନାମରେ ପ୍ରସିଦ୍ଧ ।

---

## ଶ୍ୱେତରାଜ କଥା

ପୂର୍ବରେ ତ୍ରେତାଯୁଗରେ ଶ୍ୱେତ ନାମକ ଏକ ମହାରାଜା ଥିଲେ । ସେ ବ୍ରତାବଲମ୍ବୀ ହୋଇ ଜଗନ୍ନାଥଙ୍କୁ ଭକ୍ତିସହ ସେବା କରୁଥିଲେ । ସେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଅନୁଷ୍ଠିତ ମହାଭୋଗର ପ୍ରଣାଳୀ ଅନୁସାରେ ପ୍ରତ୍ୟହ ସାନନ୍ଦରେ ସୁସଂସ୍କୃତ ଷଡ଼୍‌ବିଧ ରସଯୁକ୍ତ ବିବିଧ ଭୋଗର ବ୍ୟବସ୍ଥା କରିଥିଲେ ଏବଂ ବିଚିତ୍ର ପୁଷ୍ପମାଳା ଓ ସୁଗନ୍ଧ ଲେପାଦି ଦ୍ରବ୍ୟ ଯଥାବିଧି ଅର୍ପଣ କରାଉଥିଲେ । ପୁଣି ପ୍ରଭୁଙ୍କ ପ୍ରୀତିପାଇଁ ବହୁବିଧ ଶ୍ରୁତିମଧୁର ନୃତ୍ୟ ଗୀତ ଓ ବାଦ୍ୟ ସହ ଯଥା ସମୟରେ ବିଭିନ୍ନ ରାଜୋପଚାର ଦ୍ରବ୍ୟ ଦ୍ୱାରା ଅର୍ଚ୍ଚନା କରୁଥିଲେ ।

ଦିନେ ସେହି ଶ୍ୱେତରାଜ ଭଗବାନଙ୍କ ପ୍ରାତଃକାଳୀନ ପୂଜା ସମୟରେ ପ୍ରଭୁଙ୍କ ଦର୍ଶନ ପାଇଁ ଉପସ୍ଥିତ ହୋଇ ଭଗବାନଙ୍କୁ ପ୍ରଣାମ ଓ ସ୍ତବ କରି ପ୍ରାସାଦର ଦ୍ୱାରଦେଶରେ କରଯୋଡ଼ ଦଣ୍ଡାୟମାନ ହେଲେ ଏବଂ ତାଙ୍କ ନିଜ ବ୍ୟବସ୍ଥା ଦ୍ୱାରା ସମ୍ପାଦିତ ଅତ୍ୟୁତ୍ତମ ଉପଚାରନିଚୟ ପ୍ରଭୁଙ୍କ ସମ୍ମୁଖରେ ଥିବା ଦେଖି ମନେ ମନେ ଚିନ୍ତା କଲେ କି, ଦେବତାମାନେ 'ଦିବ୍ୟ ଉପଚାର ଦ୍ୱାରା ଯାହାଙ୍କୁ ଅର୍ଚ୍ଚନା କରିବାକୁ ସମର୍ଥ ନୁହନ୍ତି; ସେହି ଭଗବାନ କି ମନୁଷ୍ୟକଳ୍ପିତ ଭୋଗ୍ୟବସ୍ତୁ ଗ୍ରହଣ କରିବେ । ଏହା ଚିନ୍ତା କରୁ କରୁ ଶ୍ୱେତରାଜ ନିମିଳିତ ନେତ୍ରରେ ଜ୍ଞାନଦୃଷ୍ଟି ଦ୍ୱାରା ଦେଖିଲେ ଯେ, ଭଗବାନ ହରି ଦିବ୍ୟ ଆସନରେ ବିରାଜମାନ ହୋଇ ଅନ୍ନପାନାଦି ସକଳ ବସ୍ତୁ ଭୋଜନ କରୁଅଛନ୍ତି ଏବଂ ସ୍ୱୟଂ ଲକ୍ଷ୍ମୀ ଅଲୌକିକ ସୌରଭପୂର୍ଣ୍ଣ ଦିବ୍ୟମାଳାରେ ଭୂଷିତା ହୋଇ ସୁବର୍ଣ୍ଣ ନିର୍ମିତ ଦର୍ବି ( କରଚ୍ଛୁଲନ ) ଦ୍ୱାରା ସେହି ଷଡ଼ରସ ପୂର୍ଣ୍ଣ

ଅନ୍ୱେଷଣ ପରିବେଷଣ କରୁ ଅଛନ୍ତି । ଭଗବାନଙ୍କ ଚତୁର୍ଦ୍ଦିଗରେ ପରିବେଷ୍ଟିତ ହୋଇ ଦେବତାମାନେ ଭୋଜନ କରୁଅଛନ୍ତି । ଶ୍ୱେତରାଜ ଏହି ଅଦ୍ଭୁତ ବ୍ୟାପାର ଦର୍ଶନ କରି କୃତାର୍ଥ ହେଲେ ଏବଂ ପୁନର୍ବାର ନେତ୍ରଦ୍ୱୟ ଉନ୍ମୀଳନ କରିବାରୁ ଯାହା ପୂର୍ବେ ଦେଖିଥିଲେ, ତାହାହିଁ ଦେଖିବାକୁ ପାଇଲେ । ତଦବଧି ଶ୍ୱେତରାଜ ଜଗନ୍ନାଥଦେବଙ୍କ ପରମ ଭକ୍ତ ହେଲେ ଏବଂ ନିଜ ରାଜ୍ୟସ୍ଥିତ ପ୍ରଜାମାନଙ୍କ ମଧ୍ୟରେ ଅକାଳ ମୃତ୍ୟୁର ବିନାଶ ଓ ମୃତଲୋକଙ୍କ ମୁକ୍ତି କାମନା କରି ନିରାହାରରେ ଥାଇ କଳ୍ପପାଦସ୍ୱରୂପ ମନ୍ତ୍ରରାଜ ଜପ କରି ତପସ୍ୟା କଲେ । ଏହିପରି ଭାବରେ ଶତବର୍ଷ ଅତୀତ ହେବା ପରେ ପ୍ରଭୁଙ୍କର ସାକ୍ଷାତ୍କାର ଲାଭ କଲେ । ତତ୍ପରେ ଦେଖିଲେ ଯେ, ପ୍ରଭୁ ଯୋଗ ପଦ୍ମାସନରେ ଅଧିଷ୍ଠିତ ହୋଇ ଅଛନ୍ତି । ତାହାଙ୍କ ବାମଭାଗରେ ଲକ୍ଷ୍ମୀଦେବୀ ବିରାଜିତ ଅଛନ୍ତି । ତାହାଙ୍କ ମୁଖମଣ୍ଡଳ ହାସ୍ୟରେଖାଦ୍ୱାରା ସମସ୍ତଙ୍କୁ ଆନନ୍ଦିତ କରୁଅଛି । ଦେବତା ଓ ସିଦ୍ଧଗଣମାନେ ତାହାଙ୍କୁ ସ୍ତୁତି କରୁଅଛନ୍ତି । ପ୍ରଭୁଙ୍କୁ ଏପରିଭାବେ ଦର୍ଶନ କରି ଶ୍ୱେତରାଜ ବିସ୍ମୟ ଓ ଆନନ୍ଦାତିଶଯ୍ୟରେ ବିହ୍ୱଳିତ ହୋଇ ହର୍ଷ ଗଦ୍‌ଗଦ୍ ବାକ୍ୟରେ ପ୍ରାର୍ଥନା କଲେ, "ହେ ନାଥ ! ପ୍ରସନ୍ନ ହୁଅ ।" ଏହା କହି ଭୂତଳରେ ବିଲୁଣ୍ଠିତ ହେଲେ । ସେ ସମୟରେ ଶ୍ୱେତରାଜ ତପସ୍ୟାଦ୍ୱାରା ଅତି କୃଶ ( କ୍ଷୀଣକାୟ ) ହେଲେ ସୁଦ୍ଧା ତାଙ୍କ କଳେବର ନିଷ୍ପାପ ହୋଇଥିଲା ।

ଭଗବାନ୍ ନୀଳାଚଳପତି ଏପରି ଅବସ୍ଥାରେ ଶ୍ୱେତରାଜଙ୍କୁ ଭୂତଳରେ ବିଲୁଣ୍ଠିତ ହେବା ଦେଖି ତାଙ୍କୁ କହିଲେ, "ହେ ବତ୍ସ ! ଉଠ । ମୁଁ ତୁମ୍ଭପ୍ରତି ସାତିଶୟ ପ୍ରସନ୍ନ ହୋଇଅଛି । ମୁଁ ପ୍ରସନ୍ନ ହେଲେ ଜଗତରେ ଦୁର୍ଲଭ ବୋଲି କିଛି ନ ଥାଏ । ତେଣୁ ତୁମ୍ଭେ ସମ୍ପ୍ରତି ତୁମ୍ଭ ଅଭୀଷ୍ଟବର ପ୍ରାର୍ଥନା କର ।"

ଶ୍ୱେତରାଜ ଏହା ଶ୍ରବଣ କରି ଭକ୍ତିସହ କୃତାଞ୍ଜଳିପୁଟରେ ପ୍ରଭୁଙ୍କୁ କହିଲେ, "ହେ ସ୍ୱାମିନ୍ ! ଯଦି ତୁମ୍ଭର ମୋ ପ୍ରତି ସୁଦୁର୍ଲଭ ଅନୁଗ୍ରହ ହୋଇଥାଏ, ତେବେ ଏହି ବର ଦିଅନ୍ତୁ କି, ମୁଁ ଆପଣଙ୍କର ପରମଭକ୍ତରୂପେ ନିକଟରେ ଅବସ୍ଥାନ କରି ପାରିବି ଏବଂ ଯେତେ କାଳ ମୁଁ ନୃପତି ହୋଇ ରହିଥିବି ସେତେକାଳ ପର୍ଯ୍ୟନ୍ତ ମୋ

ରାଜ୍ୟସ୍ଥିତ କୌଣସି ଲୋକର ଅକାଳମୃତ୍ୟୁ ହେବ ନାହିଁ । ସେମାନଙ୍କର ଯଥାକାଳରେ ମୃତ୍ୟୁ ହେଲେ ସେମାନେ ମୁକ୍ତିଲାଭ କରି ପାରିବେ ।”

ପ୍ରଭୁ ଏହା ଶ୍ରବଣ କରି ଶ୍ୱେତରାଜାଙ୍କୁ କହିଲେ, “ହେ ଶ୍ୱେତରାଜ ! ତୁମ୍ଭର ମନୋବାଞ୍ଛା ପୂର୍ଣ୍ଣ ହେଉ । ତୁମ୍ଭେ ମୋର ଦକ୍ଷିଣ ଦିଗରେ ରହିଥିବ ଏବଂ ତୁମ୍ଭେ ପୁଣି ସହସ୍ର ବର୍ଷ ମହାସମୃଦ୍ଧି-ସହକାରେ ରାଜ୍ୟ ଉପଭୋଗ କରି ନିର୍ମାଲ୍ୟ ଭୋଜନରେ ନିଷ୍ପାପ ଓ ନିର୍ମଳ ଅନ୍ତଃକରଣ ହୋଇ ମୋର ସାରୂପ୍ୟ ମଧ୍ୟ ଲାଭ କରିବ । ତୁମ୍ଭେ ଅକ୍ଷୟବଟ ଓ ସାଗରର ମଧ୍ୟବର୍ତ୍ତୀ ସୁଦୁର୍ଲଭ ମୁକ୍ତିକ୍ଷେତ୍ରରେ ମୋର ଆଦ୍ୟ ଅବତାର ମତ୍ସ୍ୟରୂପୀ ବିଷ୍ଣୁଙ୍କ ସମ୍ମୁଖରେ ସ୍ଫଟିକ ମଣିପରି ବିମଳ ଦେହରେ ବାସ କରିବ ଏବଂ ଭୂଲୋକରେ ଶ୍ୱେତମାଧବ ନାମରେ ଖ୍ୟାତ ହେବ । ତୁମ୍ଭ ଦୁହିଁଙ୍କ ମଧ୍ୟସ୍ଥଳରେ ଯେଉଁ ମାନବ, ତିର୍ଯ୍ୟକ୍ ଜାତି କିମ୍ବା କୀଟମାନେ ପ୍ରାଣତ୍ୟାଗ କରିବେ, ସେମାନେ ନିଶ୍ଚୟ ମୁକ୍ତିଲାଭ କରିବେ । ଏହିଠାରେ ଦେବତାମାନେ ମଧ୍ୟ ମୁକ୍ତି ଇଚ୍ଛା କରିଥାଆନ୍ତି । ମାନବମାନଙ୍କ କଥା ବା କଅଣ ? ତୁମ୍ଭର ନିବାସପାଇଁ ଯେଉଁ ସ୍ଥାନ ନିର୍ଦ୍ଦିଷ୍ଟ ହେଲା, ତାହାର ଉତ୍ତର ଦିଗରେ ଏକ ସରୋବର ଅଛି । ତହିଁରେ ସ୍ନାନାନ୍ତେ ଆଚମନ କରି ଦକ୍ଷିଣତଟସ୍ଥ ତୁମ୍ଭ ଦୁହିଁଙ୍କ ଦର୍ଶନ ପରେ ପ୍ରାଣତ୍ୟାଗ କଲେ ସମସ୍ତେ ମୁକ୍ତିଲାଭ କରିବେ । ହେ ରାଜନ୍ ! ତୁମ୍ଭ ରାଜ୍ୟରେ ଯେଉଁ ଲୋକ ମୋର ନିର୍ମାଲ୍ୟ ଭୋଜନ କରିବ, ତାହାର କଦାପି ଅକାଳମୃତ୍ୟୁ ଘଟିବ ନାହିଁ ।”

ଶ୍ୱେତରାଜାଙ୍କ ହେତୁ ଏହି ସରୋବର ଶ୍ୱେତଗଙ୍ଗା ନାମରେ ଅଦ୍ୟାବଧି ପ୍ରସିଦ୍ଧ ଅଛି । ଏହା ଉଲ୍ଲେଖଯୋଗ୍ୟ ଯେ, ଏହି ପୁରୁଷୋତ୍ତମ କ୍ଷେତ୍ରର ଚତୁର୍ଦ୍ଦିଗ ମଧ୍ୟରେ ଯେ କୌଣସି ସ୍ଥାନରେ ମୃତ୍ୟୁ ଘଟିଲେ ମୁକ୍ତିଲାଭ ହୁଏ । ମୃତାତ୍ମାମାନଙ୍କ ବିଶ୍ୱାସ ଜନ୍ମାଇବା ପାଇଁ ଏହି ସ୍ଥାନଟି ପ୍ରଧାନ ପୁଣ୍ୟସ୍ଥାନ ବୋଲି କଥିତ ହୋଇଅଛି ।

## ବେଦବ୍ରତ୍ ଶାଣ୍ଡିଲ୍ୟ ବ୍ରାହ୍ମଣଙ୍କ ଉପାଖ୍ୟାନ

"ଦିବ୍ୟ ସିଂହାସନାରୂଢ଼ଂ ଦିବ୍ୟାଲଙ୍କାରଭୂଷିତଂ ।
ଅଦନ୍ତାନଂ ଶ୍ରିୟାଦତ୍ତମ୍ ପରମାନ୍ନଂ କରମ୍ବୁଜେ ॥
ଗ୍ରାସାବଶେଷଂ ପାତ୍ରେଷୁ କ୍ଷିପନ୍ତଂଚ ମୁହୁର୍ମୁହୁଃ ।
ଯାବଦ୍ ଦତ୍ତମ୍ ବସ୍ତୁଜାତମ୍ ତାବଦଶ୍ନନ୍ତ ସତ୍ୱରଂ ॥
ବିଳାସ-ସସ୍ମିତା ପାଙ୍ଗଦୃଷ୍ଟ୍ୟା ଲକ୍ଷ୍ମ୍ୟାପବର୍ଜିତଂ ।"

[ଉତ୍କଳ ଖଣ୍ଡେ]

ଅର୍ଥାତ୍ —ଭକ୍ତବତ୍ସଳ ଭଗବାନଙ୍କୁ ବେଦବ୍ରତ୍ ଶାଣ୍ଡିଲ୍ୟ ବ୍ରାହ୍ମଣ ଜ୍ଞାନ-ଦୃଷ୍ଟିରେ ଦେଖିଲେ ଯେ, ଭଗବାନ ଦିବ୍ୟ ଅଳଙ୍କାରରେ ଭୂଷିତ ହୋଇ ଦିବ୍ୟସିଂହାସନରେ ବିଜେ ହୋଇଅଛନ୍ତି ଏବଂ ନିଜ କରକମଳରେ ଲକ୍ଷ୍ମୀପ୍ରଦତ୍ତ ପରମାନ୍ନ ଗ୍ରହଣ କରି ଭୋଜନ କରୁଅଛନ୍ତି । ଆଉ ମଧ୍ୟ ଉଚ୍ଛିଷ୍ଟ ନିର୍ମାଲ୍ୟ ତତ୍ସ୍ଥ ପାତ୍ରମାନଙ୍କରେ ମୁହୁର୍ମୁହୁ ନିକ୍ଷେପ କରୁଅଛନ୍ତି । ତେଣୁ ଏହି ନିର୍ମାଲ୍ୟର ମାହାତ୍ମ୍ୟ ବର୍ଣ୍ଣନାତୀତ ଅଟେ—ଇତ୍ୟାଦି ବହୁବିଧ ଉପାଖ୍ୟାନ ବର୍ଣ୍ଣିତ ଅଛି ।

---

## ମୁକ୍ତିକ୍ଷେତ୍ର ବିଷୟ କଥା

ଏହି ପୁରୁଷୋତ୍ତମ କ୍ଷେତ୍ରର ମୁକ୍ତିଧାମ କଥା ଆଦ୍ୟରେ ସବିଶେଷ ବର୍ଣ୍ଣିତ ହୋଇଅଛି । ତାହା ପୁନରୁକ୍ତି ନ କରି କେବଳ ଏତିକିମାତ୍ର ଉଲ୍ଲେଖ କରାଯାଉଅଛି । ସ୍କନ୍ଦ ପୁରାଣର ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ଗ୍ରନ୍ଥ 'ଉତ୍କଳ ଖଣ୍ଡ'ରେ ବର୍ଣ୍ଣିତ ଥିବା ମୁକ୍ତିଧାମ କଥାକୁ ସମର୍ଥନ କରି 'ମୁକ୍ତି ଚିନ୍ତାମଣି' ଗ୍ରନ୍ଥରେ ଉଲ୍ଲେଖ ଅଛି । ବ୍ରହ୍ମ, ପଦ୍ମ, ଶ୍ରୀବିଷ୍ଣୁ, ବୃହଦ୍‌ବିଷ୍ଣୁ, ବ୍ରହ୍ମବୈବର୍ତ୍ତ, ବରାହ, ବାମନ, କୂର୍ମ, ନରସିଂହ, ବୃହନ୍ନୃସିଂହ, ବିଷ୍ଣୁଯାମଳ, ବାୟୁ, ଆଗ୍ନେୟ, ଶିବ, ଗରୁଡ଼, ବୃହଦ୍-ବାମନ, କାଶୀଖଣ୍ଡ, ଭବିଷ୍ୟ, ବ୍ରହ୍ମାଣ୍ଡ, ବ୍ୟାସସଂହିତା, ବଶିଷ୍ଠତନ୍ତ୍ର, ରୁଦ୍ରଯାମଳ, ବୈରଞ୍ଚ୍ୟତନ୍ତ୍ର ଓ ମେରୁତନ୍ତ୍ର ମାନଙ୍କରେ ମଧ୍ୟ ବର୍ଣ୍ଣିତ ହୋଇଅଛି । ଏହି ପୁରୁଷୋତ୍ତମ କ୍ଷେତ୍ରର ସୀମା ମଧ୍ୟରେ ମୃତ ପ୍ରାଣୀର ମୁକ୍ତିଲାଭ କଥା ସମ୍ବନ୍ଧରେ ଭବିଷ୍ୟ ପୁରାଣରେ କଥିତ ଅଛି ଯେ—

"ଯତ୍ର କୁତ୍ରାପି ମରଣାତ୍ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ ।
ନ ସ୍ଥାନ ନିୟମ ସ୍ତତ୍ର ଯାନ୍ତି ବିନଷ୍ଟାଃ ପରଂ ପଦଂ ॥"

ବ୍ରହ୍ମଯାମଳେ:—

"ଯେ ଚ ତ୍ୟଜନ୍ତ୍ୟସୂନ୍ କ୍ଷେତ୍ରେ ଦୁର୍ଲଭେ ପୁରୁଷୋତ୍ତମେ ।
ତେ ଯାନ୍ତି ବୈଷ୍ଣବଂ ଧାମ ବିଷ୍ଣୋର୍ନିତ୍ୟାନୁବର୍ତ୍ତିନଃ ପୁନଃ ।।"

ଏବଂ ଚ ବ୍ରହ୍ମବାକ୍ୟଂ:—

"କୃମିକୀଟ ପତଙ୍ଗାଦ୍ୟାସ୍ତିର୍ଯ୍ୟଗ୍‌ଯୋନି ଗତାସ୍ତଥେ ।
ତତ୍ର ଦେହଂ ପରିତ୍ୟଜ୍ୟ ତେ ଯାନ୍ତି ପରମାଂ ଗତିମ୍ ।।"

ଇତ୍ୟାଦି ବାକ୍ୟରୁ ଏଠାରେ ଯେ କୌଣସି ସ୍ଥାନରେ ପ୍ରାଣୀର ମୃତ୍ୟୁ ଘଟିଲେ ତାହାର ନିଶ୍ଚିତ୍ତ ମୁକ୍ତି ହୁଏ । ଏହି ପୁରୁଷୋତ୍ତମ କ୍ଷେତ୍ରସ୍ଥ ନିମ୍ନୋକ୍ତ କେତେକ ପ୍ରସିଦ୍ଧ ତୀର୍ଥସ୍ଥାନ ପ୍ରଭୃତି ବିଶେଷ ଘଟଣା ଯୋଗେ ପ୍ରସିଦ୍ଧି ଲାଭ କରିଅଛି ।

(୧) ମନ୍ଦିର ବେଢ଼ା ମଧ୍ୟରେ ଥିବା ରୋହିଣୀକୁଣ୍ଡ, ବଟ ଓ ଦାରୁବ୍ରହ୍ମ ଜଗନ୍ନାଥଙ୍କ ମନ୍ଦିରର ସନ୍ନିହିତ ସ୍ଥାନ (୨) ଚକ୍ରତୀର୍ଥ ସ୍ଥାନ (୩) ଅନ୍ତର୍ବେଦୀ ସ୍ଥାନ (୪) ମହାବେଦୀ ସ୍ଥାନ (୫) ତୀର୍ଥ ଦେବତାମାନଙ୍କ ସନ୍ନିହିତ ସ୍ଥାନ—ଏ ପଞ୍ଚ ସ୍ଥାନ କ୍ଷେତ୍ରର ଅନ୍ୟାନ୍ୟ ସାଧାରଣ ସ୍ଥାନ ଅପେକ୍ଷା ମୁଖ୍ୟତର ତୀର୍ଥରୂପେ କଥିତ ହେଲେ ସୁଦ୍ଧା ଏ ବିଷୟରେ ସ୍ୱୟଂ ଜଗନ୍ନାଥ ପ୍ରଭୁ ଶ୍ୱେତରାଜଙ୍କୁ ସୁସ୍ପଷ୍ଟଭାବରେ କହିଅଛନ୍ତି ଯେ:—

"ଆସମନ୍ତା ଦିଦଂ କ୍ଷେତ୍ରଂ ଯତ୍ର କୁତ୍ରାପି ମୁକ୍ତିଦଂ ।
ମୃତାତ୍ମନାଂ ବିଶ୍ୱସିତେ ପ୍ରଧାନଂ ସ୍ଥାନ ମୀରିତଂ ।।"

[ଉତ୍କଳ ଖଣ୍ଡେ]

ଅର୍ଥାତ୍—ଏହି ପୁରୁଷୋତ୍ତମ କ୍ଷେତ୍ରର ଚତୁଃସୀମା ମଧ୍ୟରେ ଯେ କୌଣସି ସ୍ଥାନରେ ମୃତ୍ୟୁ ଘଟିଲେ ତାହା ମୁକ୍ତିଦାନ କରିଥାଏ । କେବଳ ମୃତାତ୍ମାମାନଙ୍କ ବିଶ୍ୱାସ ଉତ୍ପାଦନ ପାଇଁ ଉକ୍ତ କେତେକ ସ୍ଥାନର ପ୍ରାଧାନ୍ୟ ବର୍ଣ୍ଣିତ ହୋଇଅଛି ।

କାଶୀକ୍ଷେତ୍ର ଓ ପୁରୁଷୋତ୍ତମ କ୍ଷେତ୍ର ଏ ଉଭୟ ମୁକ୍ତିକ୍ଷେତ୍ର ସମ୍ବନ୍ଧରେ ବ୍ୟାସଦେବ ଆଲୋଚନା କରି କହିଅଛନ୍ତି ଯେ:—

"ବେଦାନ୍ତେଷୁ ପ୍ରସିଦ୍ଧୈର୍ହି ବିଜ୍ଞାନୈଃ ଶ୍ରବଣାଦିଭିଃ ।
ମୂଢ଼ାନାଂ ଦୁର୍ଲଭୈର୍ବିପ୍ରା ବିନାପ୍ୟତ୍ର ବିମୋଚନଂ ।।
ଅବିମୁକ୍ତେ ମୁମୂର୍ଷୋସ୍ତୁ କର୍ଣ୍ଣମୂଳେ ମହେଶ୍ୱରଃ ।
ଦିଶତି ବ୍ରହ୍ମ ସଞ୍ଜ୍ଞନଂ ବୋଧୟାମ୍ବୁଂ କୃପାନିଧିଃ ।।
ତେନ ବୁଦ୍ଧ୍ୱା ସମଭ୍ୟସ୍ୟ କ୍ରମାନ୍ମୋକ୍ଷ ମବାପ୍ନୁୟାତ୍ ।

[ଉତ୍କଳ ଖଣ୍ଡେ]

ଅର୍ଥାତ—ବେଦାନ୍ତପ୍ରସିଦ୍ଧ ଶ୍ରବଣ, ମନନ, ନିଦିଧ୍ୟାସନ ଆଦି ବିଜ୍ଞାନ ବିଷୟ ମୃତବ୍ୟକ୍ତିମାନଙ୍କ ପକ୍ଷରେ ଅତି ଦୁର୍ଲଭ । ମାତ୍ର କାଶୀ-କ୍ଷେତ୍ରରେ କୃପାନିଧି ସ୍ୱୟଂ ମହେଶ୍ୱର ମୁମୂର୍ଷୁ ପ୍ରାଣୀର କର୍ଣ୍ଣମୂଳରେ ଜ୍ଞାନର ଉପାୟସ୍ୱରୂପ ତାରକ ବ୍ରହ୍ମନାମ ଉପଦେଶ ଦିଅନ୍ତି । ସାକ୍ଷାତ୍ ମହେଶ୍ୱର ଉପଦେଷ୍ଟା ହେତୁ ତାଙ୍କ ପ୍ରଦତ୍ତ ମନ୍ତ୍ରର ମାହାତ୍ମ୍ୟରୁ ପ୍ରାଣୀର ଜ୍ଞାନର ଅନ୍ୟଥାଭାବ ଘଟେ ନାହିଁ ଓ ତଦ୍ଦ୍ୱାରା ଜ୍ଞାନ ଜନ୍ମେ । ତାହାର ଅଭ୍ୟାସ ଦ୍ୱାରା କ୍ରମେ କ୍ରମେ ପ୍ରାଣୀ ମୋକ୍ଷପ୍ରାପ୍ତ ହୁଏ । ମାତ୍ର ଏହି ପୁରୁଷୋତ୍ତମ କ୍ଷେତ୍ରରେ ମୃତବ୍ୟକ୍ତିର ମୋକ୍ଷପ୍ରାପ୍ତି ବିଷୟରେ କଥିତ ହୋଇଅଛି ଯେ:—

"ଅତ୍ରତ୍ୟଜନ୍ତି ଯେ ପ୍ରାଣାଂ ତେଷାଂ ତତକ୍ଷଣ ଏବହି ।
ସ୍ୱରୂପା ଜାୟତେ ମୁକ୍ତିଃ ସଶରୀରା ସ୍ୱତେ ସମ ॥

[ଉତ୍କଳ ଖଣ୍ଡେ]

ଅର୍ଥାତ—ପୁରୁଷୋତ୍ତମ କ୍ଷେତ୍ରରେ ପ୍ରାଣତ୍ୟାଗ କଲେ ମାତ୍ରେ ପ୍ରାଣୀର ମୁକ୍ତିଲାଭ ହୁଏ । ଏଥିର କାରଣ ସମ୍ବନ୍ଧରେ ଉତ୍କଳ ଖଣ୍ଡର ୪୭ ଅଧ୍ୟାୟରେ ପୁଣି କଥିତ ଅଛି ଯେ:—

"ଯଃ ପ୍ରାଣାଂ ତ୍ୟଜତେ ତସ୍ୟ ଆତ୍ମଜ୍ଞାନଂ ପ୍ରକାଶତେ ।
ଦୀନାର୍ତ୍ତିହରଣଃ ଶ୍ରୀଶୋ ମ୍ରିୟମାଣସ୍ୟ ତସ୍ୟବୈ ॥
କର୍ଣ୍ଣମୂଳେ ବ୍ରହ୍ମବିଦ୍ୟାଂ କଥୟେନ୍ନାତ୍ର ସଂଶୟଃ ।
ତନ୍ମାୟିକାନି ମୋହାନ୍ତୌ ସାକ୍ଷାତ୍ ପଶ୍ୟତି ତଂ ବିଭୁମ୍ ।
ଯତ୍ର ଗତ୍ୱା ନ ପତନ୍ତି ଜନନୀ ଜଠରେ ପୁନଃ ।
ତତ୍ର ପ୍ରବିଷ୍ଟୋ ବିପ୍ରାଗ୍ର୍ୟ ଜଲେ ଜଲ ମିବୋକ୍ଷିତମ୍ ॥
ସାକ୍ଷାତ୍ ବ୍ରହ୍ମ ସ୍ୱରୂପେଣ ଭିସତେ ସଚରାଚରେ । ଇତ୍ୟାଦି ।

ଅର୍ଥାତ—ଦୀନଗଣଙ୍କ ଆର୍ତ୍ତିହାରୀ ସ୍ୱୟଂ ହରି ଏହି କ୍ଷେତ୍ରରେ ମ୍ରିୟମାଣ ପ୍ରାଣୀଙ୍କ କର୍ଣ୍ଣମୂଳରେ ଯେଉଁ ବ୍ରହ୍ମବିଦ୍ୟା କହନ୍ତି, ତାହା ଯୋଗୁଁ ମୁମୂର୍ଷୁ ଲୋକର ମୋହ ବିଦୂରିତ ହୁଏ । ତେଣୁ ସେ ସାକ୍ଷାତ୍ ଭଗବାନଙ୍କୁ ଅବଲୋକନ କରିପାରେ । ଯେଉଁ ସ୍ଥାନରେ ପ୍ରବେଶ କଲେ ପୁଣି ମାତୃଗର୍ଭରେ ପ୍ରବେଶ କରିବାକୁ ହୁଏ ନାହିଁ; ଅର୍ଥାତ୍ ମହାହ୍ରଦ ଜଳରେ ଜଳକଣାର ପ୍ରବେଶ ପରି ଉକ୍ତ ବ୍ରହ୍ମବିଦ୍ୟା ଲଭିଥିବା ମୁମୂର୍ଷୁ ପ୍ରାଣୀ ବ୍ରହ୍ମଙ୍କଠାରେ ଲୀନ ହେବାରୁ ତାହାର ପୁନରାବୃତ୍ତି ଘଟେ ନାହିଁ । ସୁତରାଂ ପୁରୁଷୋତ୍ତମ କ୍ଷେତ୍ରରେ ସ୍ୱୟଂ ବ୍ରହ୍ମଦେବ ମୁମୂର୍ଷୁ ଲୋକର

ମୁକ୍ତିମନ୍ତ୍ରଦାତା ହେତୁ ତତ୍କ୍ଷଣାତ୍ ମୁକ୍ତିଲାଭ ହୋଇଥାଏ । ଏହାହିଁ ପୁରୁଷୋତ୍ତମ କ୍ଷେତ୍ରର ସମଧିକ ପ୍ରାଶସ୍ତ୍ୟ ।

ବ୍ରହ୍ମଙ୍କ ପରି ଏହି ବସ୍ତୁ କ୍ଷେତ୍ର ସୁଗୋପିତ ଅଟେ ଏବଂ ଏ କ୍ଷେତ୍ରକୁ ସାକ୍ଷାତ୍ ବସ୍ତୁ ସ୍ୱରୂପ ଜାଣିବ । ବ୍ରହ୍ମଙ୍କ ମୂର୍ତ୍ତି ଦ୍ୱିବିଧ:— (୧) ଶବ୍ଦବ୍ରହ୍ମ ଓ (୨) ପରଂବ୍ରହ୍ମ । ତନ୍ମଧ୍ୟରେ ଶବ୍ଦରୂପ ଯେଉଁ ବ୍ରହ୍ମ ତାହା ନାନାର୍ଥ ସଂଯୁକ୍ତ ଏବଂ ନାନାର୍ଥମୟ । ବ୍ରହ୍ମଠାରୁ ସଚରାଚର ଜଗତ୍ ଉତ୍ପନ୍ନ ହୋଇଅଛି । ସେହି ନାନାର୍ଥମୟ ବ୍ରହ୍ମହିଁ ଦାରୁରୂପରେ ପୁରୁଷୋତ୍ତମକ୍ଷେତ୍ରରେ ଦେହରେ ଜୀବ ପରି ଅବସ୍ଥିତ ଅଛନ୍ତି । ସୁତରାଂ ତାଙ୍କ ଦର୍ଶନ ମାତ୍ରକେ ମାନବମାନେ ନିଖିଳ ପାତକରୁ ମୁକ୍ତ ହୁଅନ୍ତି । ଏଣୁ ଏଠାରେ ପ୍ରାଣତ୍ୟାଗ କଲେ ଯୋଗୀଶ୍ୱର ବସ୍ତୁପଦ ପ୍ରାପ୍ତ ହୁଅନ୍ତି । ମୁକ୍ତି କେବଳ ଦର୍ଶନର ଫଳ ନୁହେଁ । କାରଣ ଏଠାରେ ଚଣ୍ଡାଳ ଗୃହରେ ବିଷ୍ଠାଭୋଜୀ କୁକୁର ମଧ୍ୟ ମୃତ ହେଲେ ମୁକ୍ତିଲାଭ କରେ । ଏଣୁ ଅଳ୍ପ ଭାଗ୍ୟଶାଳୀ ଲୋକଙ୍କର ଏ କ୍ଷେତ୍ରରେ ମୃତ୍ୟୁ ଘଟେ ନାହିଁ । ଯେଉଁମାନେ ମୁକ୍ତି ପାଇଁ ବହୁ ଜନ୍ମ ଧରି ଚେଷ୍ଟା କରିଥାଆନ୍ତି, ସେହିମାନଙ୍କରହିଁ ଏ କ୍ଷେତ୍ରରେ ମୃତ୍ୟୁ ଘଟିଥାଏ । ତେଣୁ କଥିତ ଅଛି ଯେ :—

> "ଦେବା ମରଣମିଚ୍ଛନ୍ତି ଯତ୍ରକ୍ଷେତ୍ରେ ମୁମୁକ୍ଷବଃ ।
> ଆତ୍ମସାକ୍ଷାତ୍ କୃତୌ ମୁକ୍ତ ସ୍ତତ୍କ୍ଷେତ୍ରେ ମରଣାଦଥ ।"

[ଉତ୍କଳ ଖଣ୍ଡେ]

ଅର୍ଥାତ—ଦେବତାମାନେ ମୋକ୍ଷାଭିଳାଷୀ ହୋଇ ଏହିଠାରେ ଜନ୍ମଗ୍ରହଣ କରି ମୃତ୍ୟୁବାସନା କରନ୍ତି । ଏହି କ୍ଷେତ୍ରରେ ମରଣ ମାତ୍ରକେ ତତ୍କ୍ଷଣାତ୍ ଆତ୍ମସାକ୍ଷାତ୍କାର ଲାଭହୋଇ ମୁକ୍ତ ହୋଇଥାଏ । ଏ ବିଷୟରେ ଉତ୍କଳଖଣ୍ଡରେ ନାନାବିଧ ଉପାଖ୍ୟାନ ବର୍ଣ୍ଣିତ ଅଛି ।

ନୀଳାଦ୍ରି ମହୋଦୟ ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ କଥିତ ଅଛି ଯେ:—

[ ଲକ୍ଷ୍ମୀ ଉବାଚ ]

> "ଯମାବର୍ଣ୍ଣୟ ଭୋକ୍ଷେତ୍ରଂ ପାବନଂ ପୁରୁଷୋତ୍ତମଂ ।
> ଅତ୍ର ତ୍ୟାତାଚ୍ଛ ପ୍ରାଣାଂ ମୁକ୍ତିରେବ. ନ ସଂଶୟଃ ॥
> ତବାଧିକାରଃ ସର୍ବତ୍ର ହ୍ୟାସ୍ତେ ପୁନ ପୁନଃ ପ୍ରଭୋଃ ।
> ପଞ୍ଚକ୍ରୋଶେ ମହାକ୍ଷେତ୍ରେ ନାସ୍ତି ତେଽଧିକୃତଃ କ୍ଷିତୌ ॥

କୀଟାନାଂ ଚ ପତଙ୍ଗାନାଂ ମନୁଷ୍ୟାଣାଂ ଚ ଦେହିନାଂ ।
ଅତ୍ର ଚୈବ ତନୁ ତ୍ୟାଗାନ୍ମୁକ୍ତିଃସ୍ୟାଦ୍ ଦୁର୍ଲଭା ଯମ ॥
ଅନ୍ତରୀକ୍ଷେ ଜଳେ ବାପି କ୍ଷିତୌ ବା ଯତ୍ର କୁତ୍ରଚିତ୍ ।
ମୁକ୍ତି ମୁଁତୈବ ଜନ୍ତୁନାଂ କ୍ଷେତ୍ରେ ଶ୍ରୀପୁରୁଷୋତ୍ତମେ ॥
ତେଷୁ ତେଷ୍ୱଧିକାରସ୍ତେ ନାସ୍ତି ନାସ୍ତି ଯମ ସ୍ଫୁଟଂ ।
ଅନ୍ୟତ୍ର ହ୍ୟଧିକାରସ୍ତେ ତଂବୈ କ୍ଷେତ୍ରୋତ୍ତମଂ ବିନା ॥
ଅନ୍ୟଦେଶାଦାଗତାନାଂ କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମଂ ।
ସମୁଦ୍ଦିଶ୍ୟ ଶତଂ ପାଦାନ୍ ଗତ୍ୱା ଚେ-ନ୍ମରଣେ ସତି ॥
ନାସ୍ତି ତେଷ୍ୱଧିକାରସ୍ତେ ସତ୍ୟଂ ସତ୍ୟଂ ବଦାମ୍ୟହଂ ।
ତଥାଚ ସୂର୍ଯ୍ୟ-ଜାତ ମହାକ୍ଷେତ୍ରେ ସକୃତ୍ ସ୍ନାତ୍ୱା ମହୋଦଧୌ ॥
ବିଷ୍ଣୁଂ ପଶ୍ୟନ୍ତି ଯେ ଭକ୍ତ୍ୟା ତେଷୁ ତେଽଧିକୃତାନ ବୈ ।
ଦେଶାନ୍ତରେ ମୃତା ମୁକ୍ତା ସ୍ତେଯେ ବିଷ୍ଣୁଂ ନିରୀକ୍ଷିତାଃ ॥
ଅତୋ ବିଷ୍ଣୋଃ ଶରୀରଂହି କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମଂ ।
ସ୍ୱସ୍ୟ ନାମ୍ନାଚ ବିଖ୍ୟାତଂ ବର୍ତ୍ତି ସୂର୍ଯ୍ୟାତ୍ମଜ ସ୍ଫୁଟଂ ॥
ଏତତ୍ କ୍ଷେତ୍ର ପରଂ କ୍ଷେତ୍ରଂ ନାସ୍ତି ବ୍ରହ୍ମାଣ୍ଡମଣ୍ଡଳେ ।
ଯତ୍ର ଗତ୍ୱା ପୁନର୍ଜନ୍ମ ନାସ୍ତି ଜନ୍ମ ଭୃତାଂ ଯମ ॥
ତସ୍ମିନ୍ କ୍ଷେତ୍ରେ ନିବାସଂ ବୈ କରିଷ୍ୟାମୀତି ଯୋବଦେତ୍ ।
ସୋଽପି ମୁକ୍ତୋ ନ ସନ୍ଦେହୋ ଭବବନ୍ଧ ବିନାଶନେ ॥
ନିବାସିନାଂ ପୁନସ୍ତେଷାଂ ଫଳଂ କିଂ ବା ବଦାମ୍ୟହଂ । ଇତ୍ୟାଦି ।

ଅର୍ଥାତ୍—ଲକ୍ଷ୍ମୀ ଯମଙ୍କ ପ୍ରତି କହୁଅଛନ୍ତି, "ହେ ଯମ ! ଏହା ଶ୍ରବଣ କର । ଏହି ପବିତ୍ରତମ ପୁରୁଷୋତ୍ତମକ୍ଷେତ୍ରରେ ଦେହଧାରୀ-ମାନଙ୍କ ଶରୀର ତ୍ୟାଗ ହେଲେ ମୁକ୍ତି ନିଶ୍ଚୟ ହୁଏ । ଏହି ପଞ୍ଚକୋଶ ପରିମିତ ପୁରୁଷୋତ୍ତମ ମହାକ୍ଷେତ୍ରରେ ତୁମ୍ଭର ଅଧିକାର ନାହିଁ । ଅନ୍ୟ ସର୍ବତ୍ର ତୁମ୍ଭ ଅଧିକାର ଅଛି । ଏହି ପୁରୁଷୋତ୍ତମ କ୍ଷେତ୍ରର ଆକାଶ, ଜଳ ବା ଭୂମି ଯେ କୌଣସି ସ୍ଥାନରେ କୀଟ, ପତଙ୍ଗ ଓ ମନୁଷ୍ୟ ପ୍ରଭୃତି ଦେହଧାରୀ ପ୍ରାଣୀମାନଙ୍କର ମୃତ୍ୟୁ ହେଲେ ସହଜରେ ଦୁର୍ଲଭ ମୁକ୍ତି ଲାଭ ହୁଏ । ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଉଦ୍ଦେଶ୍ୟ କରି ଅନ୍ୟଦେଶମାନଙ୍କରୁ ଯାତ୍ରାକରି ଆସୁଥିବା ମନୁଷ୍ୟ ଶଏ ପାଦ ମାତ୍ର ଗମନ କଲାପରେ ଯଦି ତାହାର ମୃତ୍ୟୁ ଘଟେ, ସେ ମନୁଷ୍ୟଠାରେ ମଧ୍ୟ ତୁମ୍ଭର ଅଧିକାର ନାହିଁ । ଏହା ସତ୍ୟ ସତ୍ୟ; ମୁଁ କହୁଅଛି । ହେ ସୂର୍ଯ୍ୟପୁତ୍ର ! ଯେଉଁ ପ୍ରାଣୀମାନେ ଏହି ମହାକ୍ଷେତ୍ରର ମହୋଦଧିରେ

ଥରେ ମାତ୍ର ସ୍ନାନକରି ଭକ୍ତିରେ ବିଷ୍ଣୁଙ୍କୁ ଦର୍ଶନ କରିଥାନ୍ତି, ସେମାନଙ୍କଠାରେ ମଧ୍ୟ ଭୂମିର ଅଧିକାର ନାହିଁ । ଯେଉଁ ପ୍ରାଣୀ ଏହି କ୍ଷେତ୍ରରେ ଭଗବାନ ବିଷ୍ଣୁଙ୍କୁ ଦର୍ଶନ କରିଥାଏ, ସେ ଦେଶାନ୍ତରରେ ମୃତ ହେଲେ ମଧ୍ୟ ତାହାର ମୁକ୍ତି ହୁଏ । ଏହି ପୁରୁଷୋତ୍ତମକ୍ଷେତ୍ର ବିଷ୍ଣୁଙ୍କର ଶରୀର ଅଟେ । ହେ ଯମ ! ଯେଉଁଠାକୁ ଗମନ କଲେ ପ୍ରାଣୀର ପୁନର୍ଜନ୍ମ ହୁଏନାହିଁ, ସେ ବ୍ରହ୍ମାଣ୍ଡ-ମଣ୍ଡଳରେ ସେହି କ୍ଷେତ୍ର ସଦୃଶ ଅନ୍ୟ କ୍ଷେତ୍ର ନାହିଁ । ପୁରୁଷୋତ୍ତମ କ୍ଷେତ୍ରରେ ମୁଁ ନିବାସ କରିବି ବୋଲି ଯେ ଭକ୍ତିଯୁକ୍ତ ହୋଇ ନିଷ୍କପଟରେ କଥନ କରେ, ସେ ମଧ୍ୟ ମୁକ୍ତିଲାଭ କରେ । ପୁଣି ଯେଉଁମାନେ ସେହି କ୍ଷେତ୍ରରେ ବାସ କରି ଅଛନ୍ତି, ତାହାଙ୍କର ଫଳ ବା ମୁଁ ଆଉ କଣ କହିବି ।

---

## ମହାପ୍ରସାଦ ମାହାତ୍ମ୍ୟ

ବେଦରେ ପ୍ରାର୍ଥନା ବାକ୍ୟରେ କଥିତ ଅଛି ଯେ:—

"ଓଁ ସହନୌ ଭୁନକ୍ତୁ ସହ ବୀର୍ଯ୍ୟଂକରବାବହୈ ॥"

ଅର୍ଥାତ୍—"ହେ ଜଗଦୀଶ୍ୱର ! ଆପଣଙ୍କ ପ୍ରସାଦରୂପ ଅନ୍ନ ଆମ୍ଭେ ସକଳେ ଏକତ୍ର ହୋଇ ଭୋଜନ କରୁ ।" ଏହି ଘଟନା କେବଳ ବେଦବିହିତ ଯଜ୍ଞରେ ଯେଉଁ ଅନ୍ନପାକ ହୋଇ ବ୍ରହ୍ମାର୍ପଣ ହୋଇଥାଏ, ସେହି ବ୍ରହ୍ମାର୍ପିତ ଅନ୍ନହିଁ ମହାପ୍ରସାଦ । ଏହା ସମସ୍ତଙ୍କପକ୍ଷରେ ସମ୍ମିଳିତ ହୋଇ ଭୋଜନ କରିବା ବିଧେୟ । ଏହି ପୁରୀକ୍ଷେତ୍ରରେ ଆବହମାନ କାଳରୁ ପ୍ରତ୍ୟହ ପାକଶାଳାରେ ବେଦୋକ୍ତ ମନ୍ତ୍ରରେ ବୈଷ୍ଣବାଗ୍ନିକୁ ଆବାହନ କରି ହୋମ କରାହୁଏ । ପୁଣି ସେହି ଅଗ୍ନିଦ୍ୱାରା ବ୍ରହ୍ମାର୍ପଣ ପାଇଁ ଲକ୍ଷ୍ମୀଙ୍କ ସନ୍ନିଧାନରେ ଅନ୍ନବ୍ୟଞ୍ଜନାଦି ଶୁଦ୍ଧଭାବରେ ପାକ କରାଯାଇଥାଏ ।

"ସମସ୍ତ ଜଗଦାଦ୍ୟା ଶ୍ରୀଃ ସୃଷ୍ଟିସ୍ଥିତି ବିନାଶକୃତ୍ ।
ବୈଷ୍ଣବୀଶକ୍ତିରତୁଲା ବିଷ୍ଣୁଦେହାର୍ଦ୍ଧଧାରିଣୀ ॥
ସୁଧୋପମମ୍ ପଚତ୍ୟନ୍ନଂ ଭୁଂକ୍ତେ ନାରାୟଣଃ ପ୍ରଭୁଃ ।
ତଦୁଚ୍ଛିଷ୍ଟୋପ ଭୋଗୋହି ସର୍ବାଘକ୍ଷୟ-କାରକଃ ॥
ନ ତାଦୃଶ-ସମଂ ପୁଣ୍ୟଂ ବିଦ୍ୟତେ ପୃଥିବୀତଳେ ।
ପ୍ରାୟଶ୍ଚିତ୍ତମଶେଷାଣାଂ ପାପାନାଂ ପରିକୀର୍ତ୍ତିତଂ ॥

ଭଗବତ୍‌-ପାଦ-ପଦ୍ମାମ୍ବୁ ପ୍ରୋକ୍ଷଣୋପାସନା ସତଃ ।
ପାକ-ସଂସ୍କାର-କର୍ତ୍ତୃଣାମ୍ ସମ୍ପର୍କୋଽପି ନ ଦୂଷ୍ୟତେ ।।
ପଦ୍ମାୟାଃ ସନ୍ନିଧାନେନ ସର୍ବେ ତେ ଶୁଚୟଃ ସ୍ମୃତାଃ ।"

ଅର୍ଥାତ୍—ଅଖିଳ ଜଗତର ଆଦିକର୍ତ୍ତ୍ରୀ, ସୃଷ୍ଟି ସ୍ଥିତି-ପ୍ରଳୟକାରଣୀ, ବୈଷ୍ଣବୀଶକ୍ତି ସ୍ୱରୂପା ବିଷ୍ଣୁଙ୍କ ଦେହାର୍ଦ୍ଧଧାରଣୀ ଲକ୍ଷ୍ମୀଦେବୀ ହିଁ ସ୍ୱୟଂ ଅମୃତତୁଲ୍ୟ ଅନ୍ନବ୍ୟଞ୍ଜନାଦି ପାକ କରନ୍ତି ଏବଂ ସ୍ୱୟଂ ପ୍ରଭୁ ନାରାୟଣ ତାହା ଭୋଜନ କରିଥାଆନ୍ତି । ତେଣୁ ଭଗବାନଙ୍କର ସେହି ଉଚ୍ଛିଷ୍ଟ ନିର୍ମାଲ୍ୟ ଦ୍ୱାରା ସମସ୍ତ ପାପ ଧ୍ୱଂସ ପାଏ । ମହାପ୍ରସାଦ ପରି ପବିତ୍ର ବସ୍ତୁ ପୃଥିବୀ ମଧ୍ୟରେ ଆଉ କିଛି ନାହିଁ । ପାଚକ (ସୂପକାର) ମାନଙ୍କ ସମ୍ପର୍କ ହେତୁ ଏଠାରେ କୌଣସି ଦୋଷ ରହେ ନାହିଁ । ଯେହେତୁ ସାକ୍ଷାତ୍ ଲକ୍ଷ୍ମୀଙ୍କ ସାନ୍ନିଧ୍ୟ ହେତୁ ସେ ସମସ୍ତ ପବିତ୍ର ହୋଇଥାଆନ୍ତି । ବିଶେଷ ଜ୍ଞାତବ୍ୟ ଏହି ଯେ :—

"ସାଧାରଣଂ ଧର୍ମଶାସ୍ତ୍ରଂ କ୍ଷେତ୍ରେଽସ୍ମିନ୍ନ ବିଗୃହ୍ୟତେ ।
ଅସ୍ମିନ୍ତୁ ପରମୋଧର୍ମୋ ଯୋଦେବେନ ପ୍ରବର୍ତ୍ତିତଃ ।।
ଆସ୍ୟର ପ୍ରଭବୋଧର୍ମୋ ଧର୍ମସ୍ୟ ପ୍ରଭୁ ରଚ୍ୟୁତଃ ।।"

[ଉତ୍କଳ ଖଣ୍ଡେ]

ଅର୍ଥାତ୍—ଏହି ପୁରୁଷୋତ୍ତମ କ୍ଷେତ୍ରରେ ସାଧାରଣ ଧର୍ମଶାସ୍ତ୍ର ଅନୁସାରେ ବିଚାର କରିବା କର୍ତ୍ତବ୍ୟ ନୁହେଁ । ସ୍ୱୟଂ ଭଗବାନ ଏହି ସ୍ଥାନରେ ଯେଉଁ ଧର୍ମ ପ୍ରବର୍ତ୍ତନ କରିଅଛନ୍ତି, ତାହା ହିଁ ପରମ ଧର୍ମ । ଯେହେତୁ ଆସ୍ୟରରୁ ଧର୍ମର ଉତ୍ପତ୍ତି । ସେହି ଧର୍ମର ପ୍ରଭୁ ସ୍ୱୟଂ ନାରାୟଣ ଅଟନ୍ତି । ତେଣୁ ବ୍ରହ୍ମାର୍ପିତ ହୋଇଥିବା ନିର୍ମାଲ୍ୟର ସେବନ ଅଶେଷ ପୁଣ୍ୟଜନକ ଅଟେ । ଏଥିରେ ସ୍ପୃଶ୍ୟାସ୍ପୃଶ୍ୟର ବିଚାର ନାହିଁ । ଭବିଷ୍ୟ ପୁରାଣରେ କଥିତ ଅଛି ଯେ :—

" ଅତି ପାତକ ପାପାନି ମହାପାପାନି ଯାନିଚ ।
ତାନି ସର୍ବାଣି ନଶ୍ୟନ୍ତି ଜଗନ୍ନାଥାନ୍ନ ଭକ୍ଷଣାତ୍ ।।"

ସ୍କନ୍ଦ ପୁରାଣରେ କଥିତ ଅଛି ଯେ, ପୁରୁଷୋତ୍ତମଙ୍କର ନିର୍ମାଲ୍ୟ ଅମୃତ ଅଟେ । ତାହାକୁ ମସ୍ତକରେ ଧାରଣ କଲେ ସକଳ ପାପ କ୍ଷୟ ହୁଏ; ଭକ୍ଷଣ କଲେ ମଦ୍ୟପାନାଦିଜନିତ ସର୍ବପାପ କ୍ଷୟ ହୁଏ ଏବଂ ଆଘ୍ରାଣ କଲେ ମାନସ ପାପ, ଦର୍ଶନ କଲେ ଦୃଷ୍ଟିଗତ ପାପ,

ଆସ୍ୱାଦନ କଲେ ବାଚନିକ ପାପ ଓ ଶ୍ରବଣ ଜନିତ ପାପ ନଷ୍ଟ ହୁଏ । ସ୍ପର୍ଶକଲେ ମିଥ୍ୟାଭାଷଣ ଜନିତ ପାପ ଓ ଗାତ୍ରରେ ଲେପନ କଲେ ଶରୀରର ସକଳବିଧ ପାପ ନଷ୍ଟ ହୋଇଥାଏ ।

ତନ୍ତ୍ରଯାମଳରେ ବର୍ଣ୍ଣିତ ହୋଇଅଛନ୍ତି ଯେ, ପୁରୁଷୋତ୍ତମ କ୍ଷେତ୍ରରେ ଦାରୁରୂପୀ "ଜଗନ୍ନାଥ" ଭକ୍ତମାନଙ୍କ ଅଭୀପ୍ସିତପ୍ରଦ ହୋଇ ମୋକ୍ଷର କାରଣ ସ୍ୱରୂପ ବିରାଜିତ ହୋଇ ଅଛନ୍ତି । ଏହି ମହାପ୍ରସାଦର ସଂସ୍ପର୍ଶରେ ସକଳ ବସ୍ତୁ ପବିତ୍ର ହୁଏ ଏବଂ ତାହା ଦାନ ଓ ଭୋଜନ କଲେ ପ୍ରଭୁଙ୍କଠାରେ ଅଚଳାଭକ୍ତି ଉତ୍ପନ୍ନ ହୋଇ ଜ୍ଞାନଲାଭ ହୁଏ । ସେହିହେତୁରୁ ମୁକ୍ତିଲାଭ ଘଟିଥାଏ । ତେଣୁ ନିର୍ମାଲ୍ୟ ଦାନ ପ୍ରଶସ୍ତ ଦାନ ଅଟେ ।

ରୁଦ୍ରଯାମଳରେ କଥିତ ଅଛି ଯେ, କଳିକାଳରେ ଲୋକେ ସାଧାରଣତଃ ପାପଭାଗୀ ହୁଅନ୍ତି । ସେମାନଙ୍କ ପାପ ଧ୍ୱଂସ ପାଇଁ ଏହି ନିର୍ମାଲ୍ୟହିଁ ସର୍ବପ୍ରଧାନ ବସ୍ତୁ । ଏହି ନିର୍ମାଲ୍ୟ ଭକ୍ତିରେ, ଲୋଭରେ, ବା କ୍ଷୁଧାନିବାରଣ ପାଇଁ ଆକଣ୍ଠ ଭକ୍ଷଣ କଲେ ପ୍ରାଣୀ ସମସ୍ତ ପାତକରୁ ମୁକ୍ତହୋଇ ପବିତ୍ର ହୁଅନ୍ତି ।

"ନିର୍ମାଲ୍ୟଂ ଜଗଦୀଶସ୍ୟ ନାଶ୍ନିଆଶ୍ନାମି କିଞ୍ଚନ ।
ଇତି ସତ୍ୟ-ପ୍ରତିଜ୍ଞୋପଃ ପ୍ରତ୍ୟହଂ ତଚ୍ଚ ଭକ୍ଷୟେତ୍ ॥
ସର୍ବପାପ-ବିନିର୍ମୁକ୍ତଃ ଶୁଦ୍ଧାନ୍ତଃକରଣୋ ନରଃ
ସ ଶୁଦ୍ଧ୍ୱା ବୈଷ୍ଣବଂ ସ୍ଥାନଂ କ୍ରମାଦ୍ ଯାତି ନ ସଂଶୟଃ ॥
[ସ୍କନ୍ଦ ପୁରାଣେ]

ଅର୍ଥାତ୍—'ପ୍ରଭୁଙ୍କ ନିର୍ମାଲ୍ୟ ଭକ୍ଷଣ ନ କଲେ ଅନ୍ୟ କିଛି ଭକ୍ଷଣ କରିବି ନାହିଁ' ଏହି ପ୍ରତିଜ୍ଞା କରି ଯେଉଁ ଲୋକ ପ୍ରତ୍ୟହ ତାହା ଭକ୍ଷଣ କରେ, ସେ ସକଳ ପାପରୁ ମୁକ୍ତ ହୁଏ ଓ ତାହାର ଅନ୍ତଃକରଣ ଶୁଦ୍ଧ ହୁଏ । ସେ କ୍ରମଶଃ ମହାପ୍ରସାଦ ଭକ୍ଷଣ କରିବାରୁ ବିଷ୍ଣୁସ୍ଥାନକୁ ଗମନ କରେ । ମହାପ୍ରସାଦ ଭକ୍ଷଣ ପୂର୍ବରୁ ଏହା ପାଠ କରିବାର ନିୟମ ।

"କ୍ରନ୍ଦନ୍ତି ସର୍ବପାପାନି ନିଃଶ୍ୱସନ୍ତି ମୁହୁର୍ମୁହୁଃ ।
ହା ହା କୃତ୍ୱା ପଳାୟନ୍ତେ ଜଗନ୍ନାଥାନ୍ନ ଭକ୍ଷଣାତ୍ ॥"
[ ଚତୁର୍ବର୍ଗ ଯୋଗୀଶ୍ୱରେ ]

ଇନ୍ଦ୍ରାଦି ଦେବତାମାନେ ମନୁଷ୍ୟ ଶରୀର ଧାରଣ କରି ଏହା ନିତ୍ୟ ଭୋଜନ କରୁଥିବା କଥା ଭଗବତ୍ ବାକ୍ୟରେ କଥିତ ଅଛି । ପୁଣି କଥିତ ଅଛି ଯେ :—

"ଶୁଷ୍କଂ ପର୍ଯ୍ୟୁଷିତଂ ବାପି ନୀତମ୍ବା ଦୂର ଦେଶତଃ ।
ଦୁର୍ଜନେନାପି ସଂସ୍ପୃଷ୍ଟଂ ସର୍ବଥୈବାଘନାଶନଂ ॥"

[ବାୟୁ ପୁରାଣେ]

ଅର୍ଥାତ୍‌:—ଶୁଷ୍କ ପର୍ଯ୍ୟୁଷିତ ( ବାସୀ ) ବା ଦୂରଦେଶକୁ ନେଲେ ଅଥବା ଦୁର୍ଜନ ଲୋକ ସ୍ପର୍ଶକଲେ ମଧ୍ୟ ନିର୍ମାଲ୍ୟ ସର୍ବଥା ସକଳପାପର ନାଶକାରୀ ଅଟେ ।

"ଯଃ ଶ୍ରାଦ୍ଧକାଳେ ହରିଭୁକ୍ତ ଶେଷଂ ।
ଦଦ୍ୟାତ୍ ସଭକ୍ତ୍ୟା ପିତୃଦେବତାନାଂ ॥
ତେନୈବ ପିଣ୍ଡାଂସ୍ତୁ ଜଳୈର୍ବିମିଶ୍ରା ।
ନା କୋଟି କଳ୍ପଂ ପିତରଃ ସୁତୃପ୍ତାଃ ॥"

[ ପଦ୍ମ ପୁରାଣେ ]

ଅର୍ଥାତ୍ :—ଜଗନ୍ନାଥଙ୍କ ନିର୍ମାଲ୍ୟ ଶ୍ରାଦ୍ଧକାଳରେ ପିତୃ ଓ ଦେବତାମାନଙ୍କୁ ଓ ପିତୃମାନଙ୍କ ଉଦ୍ଦେଶ୍ୟରେ ଜଳମିଶ୍ରିତ ପିଣ୍ଡ ପ୍ରଦାନ କଲେ ପିତୃଲୋକମାନେ କୋଟିକଳ୍ପ ପର୍ଯ୍ୟନ୍ତ ସୁତୃପ୍ତ ହୋଇଥାନ୍ତି— ଇତ୍ୟାଦି ବହୁବିଧ ବିଷୟ ବର୍ଣ୍ଣିତ ଅଛି ।

ସକଳ ଶ୍ରେଣୀର ଲୋକେ ଏକ ପଂକ୍ତିରେ ବସି ମଧ୍ୟ ଏହି ନିର୍ମାଲ୍ୟ ଭୋଜନ କରି ଧନ୍ୟ ହୁଅନ୍ତି । ଏ ବିଷୟରେ ଅନେକ ଉପାଖ୍ୟାନ ମଧ୍ୟ ପୁରାଣମାନଙ୍କରେ କଥିତ ଅଛି । ତନ୍ମଧ୍ୟରୁ ଏହି ଭଗବତ୍ ବାକ୍ୟ ଉଲ୍ଲେଖ ଯୋଗ୍ୟ ଯେ :—

"ସତ୍ୟଂ ସତ୍ୟଂ ପୁନଃ ସତ୍ୟଂ ସତ୍ୟମେବ ସୁନିଶ୍ଚିତଂ
ଭକ୍ତ୍ୟାମମାନ୍ନଂ ଭୁକ୍ତ୍ୱାତୁ ସାନିଧ୍ୟଂ ମମ ଗଚ୍ଛତି ॥"

[ ଚତୁର୍ବର୍ଗ ଯୋଗୀଶ୍ୱରେ ]

ଅର୍ଥାତ୍ —ଭଗବାନ କହିଅଛନ୍ତି ଯେ, ଏହା ସତ୍ୟ ସତ୍ୟ । ପୁଣି ସୁନିଶ୍ଚିତ ସତ୍ୟ ଯେ, ଯେଉଁ ପ୍ରାଣୀ ଭକ୍ତିସହକାରେ ମୋର ନିର୍ମାଲ୍ୟ ଭକ୍ଷଣ କରେ, ସେ ମୋ ସାନ୍ନିଧ୍ୟ ମୁକ୍ତି ନିଶ୍ଚୟ ଲାଭକରେ ।

## ତୀର୍ଥ-ଦେବତାମାନଙ୍କ ସଂକ୍ଷିପ୍ତ ପରିଚୟ

ସ୍କନ୍ଦ ପୁରାଣର ଉତ୍କଳ ଖଣ୍ଡରେ ବର୍ଣ୍ଣିତଥିବା ପୁରୁଷୋତ୍ତମ କ୍ଷେତ୍ରସ୍ଥ ତୀର୍ଥ-ଦେବତାମାନଙ୍କର ଇତିହାସ ଓ ପରିଚୟ ପୂର୍ବରୁ ବର୍ଣ୍ଣିତ ହୋଇଅଛି । ମାତ୍ର ଯେଉଁ ତୀର୍ଥ-ଦେବତାମାନଙ୍କର ପରିଚୟର ଉଲ୍ଲେଖ ହୋଇନାହିଁ, ସେମାନଙ୍କ ସମ୍ବନ୍ଧରେ କତିପୟ ସଂକ୍ଷିପ୍ତ ପରିଚୟ ନିମ୍ନରେ ବର୍ଣ୍ଣିତ ହେଉଅଛି ।

### ୧ । ଶ୍ରୀ ବିଲ୍ୱେଶ୍ୱର ଶିବଙ୍କ କଥା

ପୂର୍ବକାଳରେ ଯେଉଁ ସମୟରେ ପାତାଳବାସୀ ଦୈତ୍ୟମାନେ ମହୀତଳ ଭେଦ କରି ଭୂଲୋକକୁ ଆସି ନାନାପ୍ରକାର ଉପଦ୍ରବ ଘଟାଇ-ମାନବଗଣଙ୍କୁ ଭକ୍ଷଣ କରୁଥିଲେ, ସେ ସମୟରେ ଏହି ସ୍ଥାନରେ ପାତାଳରୁ ଭୂଲୋକକୁ ଆସିବାପାଇଁ ଦୈତ୍ୟମାନେ ଏକ ଦ୍ୱାର ନିର୍ମାଣ କରିଥିଲେ । ମାତ୍ର ଏପରି ଗୁରୁତର ଭୂ-ଭାର ନିବାରଣ ପାଇଁ ଭଗବାନ ବିଷ୍ଣୁ ଦେବକୀ ଗର୍ଭରେ ଶ୍ରୀକୃଷ୍ଣ ରୂପରେ ଜନ୍ମଗ୍ରହଣ କରି ସେ ସମୟରେ ପୃଥିବୀ ପାଳନ କରୁଥିଲେ । ଏକଦା ଶ୍ରୀକୃଷ୍ଣ ଯାଦବ ଓ ପାଣ୍ଡବଗଣଙ୍କ ସହିତ ଏହି କ୍ଷେତ୍ରସ୍ଥଳରେ ଉପସ୍ଥିତ ହୋଇ ତୀର୍ଥରାଜ ସମୁଦ୍ର ଜଳରେ ସ୍ନାନ ପରେ ନୀଳାଚଳବିହାରୀଙ୍କୁ ଦୂରରେ ଥାଇ ମନେ ମନେ ପ୍ରଣାମ କଲେ । ଏପରି ସମୟରେ ଉକ୍ତ ଦୈତ୍ୟମାନଙ୍କ ଦ୍ୱାରଦେଶରେ ସେମାନେ ଉପଗତ ହେଲେ । ଶ୍ରୀକୃଷ୍ଣ ଦେଖିଲେ ଯେ ଦୈତ୍ୟମାନଙ୍କ କୃତ ବିବରଟି ଅତି ଭୟାବହ । ସେଥିରେ ମାନବଗଣଙ୍କ ପ୍ରବେଶ କରିବାର ସାଧ୍ୟ ନାହିଁ । ସୁତରାଂ ଲୋକମାନଙ୍କୁ ଭ୍ରାନ୍ତିଦ୍ୱାରା ମୋହିତ କରି ଏହା ପ୍ରକାଶ କଲେ ଯେ, ଏହି ସ୍ଥାନରେ ଥିବା ଶିବଙ୍କୁ ପୂଜା କରିବାକୁ ହେବ । ପରେ ଗୋଟିଏ ବିଲ୍ୱଫଳ ଆଣି ତ୍ରିଲୋଚନ ଶିବଙ୍କୁ ପୂଜା କଲେ ଓ ନିଜେ ନିଜକୁ ସ୍ତବ କଲପରି ଶିବଙ୍କୁ ସ୍ତବ କଲେ । ପରେ ଶିବଙ୍କ ଅନୁଗ୍ରହରେ ସେହି ଦ୍ୱାର ପ୍ରବେଶଯୋଗ୍ୟ ହେବାର ଲୋକେ ଦେଖିଲେ । ପ୍ରଭୁ ଶ୍ରୀକୃଷ୍ଣ ସେହି ପଥଦ୍ୱାରା ସସୈନ୍ୟେ ପାତାଳପୁରକୁ ଗମନ କଲେ ଏବଂ ତତ୍ରସ୍ଥ ଦୈତ୍ୟମାନଙ୍କୁ ବିନାଶ କରି ଭୂ-ଭାର ଲାଘବ କରିଥିଲେ । ତାହାପରେ ଶ୍ରୀକୃଷ୍ଣ ପୁନର୍ବାର ଏହି ସ୍ଥଳରେ ଉପସ୍ଥିତ ହୋଇ ବୃଷଧ୍ୱଜଙ୍କୁ ପୂଜା କଲେ ଏବଂ ଉକ୍ତ ଦ୍ୱାର ବନ୍ଦକରିବା ପାଇଁ ସେଠାରେ ମନ୍ଦିର ନିର୍ମାଣ କରି ଶିବଙ୍କୁ ପ୍ରାର୍ଥନା କଲେ କି, "ହେ ଶମ୍ଭୋ !

ଆପଣ ଏହି ସ୍ଥଳରେ ଅବସ୍ଥାନ କରନ୍ତୁ । ଯେହେତୁ ଆପଣଙ୍କ ବ୍ୟତିରେକେ ଦୈତ୍ୟମାନଙ୍କୁ ବିନାଶ କରିବାକୁ ଆଉ କେହି ସମର୍ଥ ନୁହନ୍ତି । ଏହିପରି ଭାବରେ ଶିବଙ୍କୁ ସ୍ଥାପନ କରି ପ୍ରଭୁ ଶ୍ରୀକୃଷ୍ଣ ଦ୍ୱାରକାକୁ ପ୍ରତ୍ୟାବର୍ତ୍ତନ କରିଥିଲେ । ତେଣୁ ପୃଥିବୀ ମଧ୍ୟରେ ଏହି ଶମ୍ଭୁ ବିଲେ୍ୱଶ୍ୱର ନାମରେ ଖ୍ୟାତ ହୋଇଅଛନ୍ତି । ତାହାର ପୂର୍ବରେ ଏ ଶିବ ଅଷ୍ଟଶମ୍ଭୁ ମଧ୍ୟରେ ଏକ ଶମ୍ଭୁ ବୋଲି ପରିଚିତ ଥିଲେ । ଏହି ବିଲେ୍ୱଶ୍ୱର ଶିବ କ୍ଷେତ୍ରଧାମର ପୂର୍ବସୀମାକୁ ଅଳଙ୍କୃତ କରି ରହିଅଛନ୍ତି । ଏହାଙ୍କୁ ଦର୍ଶନ କରି ମାନବମାନେ ଦୁସ୍ତର ବିପତ୍ତିରୁ ଉତ୍ତୀର୍ଣ୍ଣ ହୋଇଥାଆନ୍ତି ।

## ୨ । ଶ୍ରୀ କପୋତେଶ୍ୱର ଦେବଙ୍କ କଥା

ପୂର୍ବକାଳରେ ଏହି କ୍ଷେତ୍ର ମଧ୍ୟରେ ଯେଉଁ ସୁପ୍ରସିଦ୍ଧ କୁଶସ୍ଥଳୀ ଥିଲା, ତାହା ଅତି ତୀକ୍ଷ୍ଣଧାର କୁଶାଗ୍ର ଓ ନାନାବିଧ କଣ୍ଟକ ଦ୍ୱାରା ଆବୃତ ଥିବାରୁ ଜୀବମାନଙ୍କ ବାସଯୋଗ୍ୟ ନ ଥିଲା । ସେହି ସ୍ଥାନଟି ପିଶାଚଗଣଙ୍କ ବାସଯୋଗ୍ୟ ସ୍ଥାନ ପରି ବିବେଚିତ ହେଉଥିଲା ।

ଏକଦା ମହାଦେବଙ୍କ ମନରେ ଉଦୟ ହେଲା ଯେ, ଭଗବାନ ବିଷ୍ଣୁଙ୍କ ବ୍ୟତୀତ ଆଉ କେହି ପୂଜ୍ୟ ନୁହନ୍ତି । ତେଣୁ ସମ୍ପ୍ରତି ମୁଁ କପରି ପୂଜନୀୟ ହେବି ଏହା ଚିନ୍ତା କରି ନୀଳପର୍ବତ-ସନ୍ନିହିତ ବିରୋଧଶୂନ୍ୟ ପୁଣ୍ୟଭୂମି କୁଶସ୍ଥଳୀରେ ଉପଗତ ହୋଇ କେବଳ ବାୟୁ ଭକ୍ଷଣ କରି କୋଠର ତପସ୍ୟା ଆରମ୍ଭ କଲେ । ଏ ସ୍ଥୂଳାକାର ଶିବ କେବଳ ସେଠାରେ ପବନାହାରୀ ହୋଇ ତପସ୍ୟା କରିବାରୁ କପୋତ ପରି ସୂକ୍ଷ୍ମ ହୋଇଗଲେ । ଶ୍ରୀହରି ବିଷ୍ଣୁ ତାଙ୍କପ୍ରତି ସନ୍ତୁଷ୍ଟ ହୋଇ ବର ପ୍ରଦାନ କଲେ, "ତୁମ୍ଭେ ମୋ ପରି ପୂଜ୍ୟ ଓ ସମ୍ମାନ ଲାଭ କରିବ ।" ଶିବଙ୍କ ପ୍ରଭାବରୁ ଏହି କୁଶସ୍ଥଳୀ ସରୋବର ତଡ଼ାଗ ଓ ନଦୀଦ୍ୱାରା ସୁଶୋଭିତ, ବିବିଧ ତରୁଲତା ଫଳପୁଷ୍ପ ଓ ବିବିଧ ପକ୍ଷୀସମୂହ ଦ୍ୱାରା ପରିପୂର୍ଣ୍ଣ, ରତ୍ନରାଜି ଶୋଭାସମ୍ଭାରରେ ବିଭୂଷିତ ହୋଇ ସକଳ ପ୍ରାଣୀଙ୍କର ସୁଖଜନକ ହେଲା । ଶିବ ତପସ୍ୟା ଦ୍ୱାରା କପୋତପରି ସୂକ୍ଷ୍ମ ଶରୀର ହୋଇଥିବାରୁ ବିଷ୍ଣୁଙ୍କ ଆଜ୍ଞାନୁସାରେ କପୋତେଶ୍ୱର ନାମରେ ଖ୍ୟାତ ହୋଇଅଛନ୍ତି । ହରିଙ୍କ ଅନୁମତି ଅନୁସାରେ ସେ ଅଦ୍ୟାପି ଏ ସ୍ଥାନରେ ମୃଡ଼ାନୀଙ୍କ ସହିତ ଅବସ୍ଥାନ କରିଅଛନ୍ତି । କପୋତେଶ୍ୱର ଶିବଙ୍କୁ ଯେଉଁମାନେ ଅର୍ଚ୍ଚନା ଓ ସ୍ତବ କରନ୍ତି, ସେମାନେ ନିଷ୍ପାପ ହୁଅନ୍ତି ।

## ୩ । ଶ୍ରୀ ଯମେଶ୍ୱର ଦେବଙ୍କ କଥା

ଏହି କ୍ଷେତ୍ରରେ ମହାଦେବ ଇନ୍ଦ୍ରିୟ ସଂଯମ କରି ଚତୁର୍ବର୍ଗ ଫଳଦାତା ସାକ୍ଷାତ୍ ନାରାୟଣ ଜଗନ୍ନାଥଙ୍କୁ ଉପାସନା କରିବାପାଇଁ ସମୁଦ୍ର ତଟକୁ ଆଶ୍ରୟ କରି ରହିଥିଲେ । ଏ କଥା ଯମ ଲକ୍ଷ୍ମୀଙ୍କଠାରୁ ଶ୍ରବଣ କରି ଶିବଙ୍କୁ ସକଳ ପ୍ରକାରରେ ପୂଜା କରିଥିଲେ । ଶିବ ଯମଙ୍କ ସଂଯମ ନଷ୍ଟ କରିଥିଲେ ବୋଲି ଏହି ଶିବଙ୍କ ନାମ ଯମେଶ୍ୱର ହୋଇଅଛି ।

ତାହାଙ୍କୁ ଦର୍ଶନ ଓ ପୂଜାକଲେ କୋଟି କୋଟି ଲିଙ୍ଗ ପୂଜନର ଫଳ ଲାଭ ହୁଏ ।

## ୪ । ଶ୍ରୀ କପାଳମୋଚନ ଦେବଙ୍କ କଥା

ପୂର୍ବକାଳରେ ମହାଦେବ କ୍ରୋଧାନ୍ୱିତ ହୋଇ ବ୍ରହ୍ମାଙ୍କର ଯେଉଁ ପଞ୍ଚମ ମୁଖକୁ ଛେଦନ କରିଥିଲେ, ସେହି ପଞ୍ଚମ ମୁଖ ମହାଦେବଙ୍କ ହସ୍ତରେ ସର୍ବଦା ଲାଗି ରହିଥିଲା । ସେହି ଅବସ୍ଥାରେ ଶିବ ବ୍ରହ୍ମାଣ୍ଡ ଭ୍ରମଣ କରିବା ପରେ ଶଙ୍ଖାକାର କ୍ଷେତ୍ରକୁ ଆସି ଏହାର ଦ୍ୱିତୀୟ ଆବର୍ତ୍ତନ ମଧ୍ୟରେ ସେହି ବ୍ରହ୍ମାଙ୍କ ମସ୍ତକ କପାଳକୁ ମୋଚନ କରି ଏହି ସ୍ଥାନରେ ଅବସ୍ଥାନ କରି ଅଛନ୍ତି । ତେଣୁ ଏହି ଶମ୍ଭୁ କପାଳମୋଚନ ନାମରେ ପ୍ରସିଦ୍ଧ ।

କପାଳମୋଚନ ଶିବଙ୍କୁ ଦର୍ଶନ ପୂଜନ ଓ ପ୍ରଣାମ କଲେ ବ୍ରହ୍ମହତ୍ୟାଦି ସର୍ବବିଧ ପାପର ବିନାଶ ଘଟେ । ଏହାର ଦକ୍ଷିଣ ପାର୍ଶ୍ୱରେ ପ୍ରାଣତ୍ୟାଗ କଲେ ପୁନର୍ଜନ୍ମ ହୁଏନାହିଁ ।

## ୫ । ଶ୍ରୀ ନୀଳକଣ୍ଠ ଦେବଙ୍କ କଥା

ଏହି ଶଙ୍ଖାକାର କ୍ଷେତ୍ରର ପଶ୍ଚିମ ସୀମା କ୍ଷେତ୍ରର ମସ୍ତକ ପରି ଅଟେ । ଏହି ଶଙ୍ଖାକାର କ୍ଷେତ୍ରର ଅଗ୍ରରେ ନୀଳକଣ୍ଠ ନାମକ ଯେଉଁ ଶିବ ଅଛନ୍ତି, ତାହାଙ୍କ ଯୋଗୁଁ ଏକ କ୍ରୋଶ ବ୍ୟାପି ଏହି ସ୍ଥାନ ଦୁର୍ଲଭ କ୍ଷେତ୍ର ହୋଇଅଛି ।

## ୬ । ଶ୍ରୀଲୋକନାଥ ଦେବଙ୍କ କଥା

କ୍ଷେତ୍ରର ପଶ୍ଚିମ ସୀମାରେ ଲୋକନାଥ ନାମକ ମହାଦେବ ତ୍ରେତା ଯୁଗରେ ପ୍ରତିଷ୍ଠିତ ହୋଇଥିବା କଥା କିମ୍ବଦନ୍ତୀରୁ ପ୍ରକାଶ ପାଉଅଛି । ଏହି ଶିବ ଦୋଷୀଙ୍କୁ ଗୁରୁତର ଦଣ୍ଡ ଦେଉଥିବାର ପ୍ରବାଦ ଥିବାରୁ ଏହାଙ୍କୁ ଲୋକେ ଜଗନ୍ନାଥଙ୍କଠାରୁ ଅଧିକ ଭକ୍ତି ଓ ଭୟ କରନ୍ତି ।

ଏହିଠାରେ ପ୍ରତିବର୍ଷ ଶିବରାତ୍ରି ଦିନ ହରିହର ମିଳନ ଉତ୍ସବ ହେଉଥିବାରୁ ଏ ସ୍ଥଳରେ ବହୁ ଲୋକଙ୍କର ସମାଗମ ହୁଏ ।

## ୭ । ଶ୍ରୀ ବିମଳା ଦେବୀଙ୍କ କଥା

ଶଙ୍ଖାକାର କ୍ଷେତ୍ରର ତୃତୀୟାବର୍ତ୍ତ ସୀମା ମଧ୍ୟରେ ବିମଳା ନାମରେ ଯେଉଁ ଶକ୍ତି ଅଛନ୍ତି, ମାନବ ତାହାଙ୍କୁ ଭକ୍ତିସହକାରେ ପୂଜା ପ୍ରଣାମ ଓ ତାହାଙ୍କ ନାମ କୀର୍ତ୍ତନ କଲେ ସକଳ ଅଭୀଷ୍ଟ ଲଭିକରି ଶେଷରେ ମୁକ୍ତିଲାଭ କରିଥାଆନ୍ତି । ଏ ଶ୍ରୀମନ୍ଦିରର ଅନ୍ତଃପ୍ରାଙ୍ଗଣରେ ବିରାଜିତ ଅଛନ୍ତି ।

## ୮ । ଶ୍ରୀ ଅର୍ଦ୍ଧାଶନୀ ବା ମାଉସୀ ମା'ଙ୍କ କଥା

କପାଳମୋଚନଠାରୁ ଅର୍ଦ୍ଧାଶନୀ ପର୍ଯ୍ୟନ୍ତ ସ୍ଥାନ ଶଙ୍ଖର ମଧ୍ୟ ଭାଗ ବୋଲି କଥିତ । ମହାପ୍ରଳୟରେ ବର୍ଦ୍ଧିତ ଜଳର ଅର୍ଦ୍ଧେକ ଅଂଶ ସୃଷ୍ଟିର ଆଦରେ ଅଶନ ଅର୍ଥାତ ଭକ୍ଷଣ କରିଥିଲେ ବୋଲି ଏହି ଶକ୍ତି ଅର୍ଦ୍ଧାଶନୀ ନାମରେ ଖ୍ୟାତ ଅଟନ୍ତି ।

ଏଥିର କିମ୍ବଦନ୍ତୀ ଅଛି ଯେ, ଏଠାରେ ଜଗନ୍ନାଥଙ୍କର ମାଉସୀ ଘର ଥିବାରୁ ପ୍ରଭୁଙ୍କ ରଥ ଗୁଣ୍ଡିଚା ମଣ୍ଡପରୁ ଫେରିବା ସମୟରେ ଏ ପାଖର ବଡ଼ଦାଣ୍ଡରେ ରଥ ରଖାଯାଇ ମାଉସୀ ମା ମନ୍ଦିରରେ ତିଆରି ହୋଇଥିବା ପୋଡ଼ପିଠା ପ୍ରଭୁଙ୍କୁ ଭୋଗ ଦିଆଯାଉଥାଏ । ତେଣୁ ଏହି ସ୍ଥାନ ମାଉସୀ ଦେଉଳ ବୋଲି କଥିତ ଅଟେ ।

ଅର୍ଦ୍ଧାଶନୀ ଶକ୍ତିଙ୍କୁ ଦର୍ଶନ ଓ ପ୍ରଣାମ କଲେ ଶାଶ୍ୱତ ଭୋଗ ପ୍ରାପ୍ତ ହୁଏ ।

## ୯ । ପଞ୍ଚତୀର୍ଥ କଥା

(କ) ମାର୍କଣ୍ଡେୟବଟ, (ଖ) ଅକ୍ଷୟ ବଟ, (ଗ) ଦାରୁବ୍ରହ୍ମ ଚତୁର୍ଦ୍ଧା ମୂର୍ତ୍ତି, (ଘ) ତୀର୍ଥରାଜ ମହୋଦଧି, (ଙ) ଇନ୍ଦ୍ରଦ୍ୟୁମ୍ନ ପୁଷ୍କରଣୀ— ଏହି ପାଞ୍ଚସ୍ଥାନ ସ୍କନ୍ଦ ପୁରାଣରେ ପଞ୍ଚତୀର୍ଥ ବୋଲି କଥିତ ହୋଇଅଛି । କୌଣସି କୌଣସିଠାରେ ରୋହିଣୀକୁଣ୍ଡ ପଞ୍ଚତୀର୍ଥ ବୋଲି ଉଲ୍ଲେଖିତ ଥିବା ଦୃଷ୍ଟ ହୁଏ । ମାତ୍ର ନୀଳମାଧବ ମୂର୍ତ୍ତିଙ୍କ ଅନ୍ତର୍ଦ୍ଧାନ ସମୟରେ ରୋହିଣୀକୁଣ୍ଡ ବାଲୁକା ଦ୍ୱାରା ପୋତି ହୋଇ ଅଦୃଶ୍ୟ ହୋଇଥିବାରୁ ସ୍କନ୍ଦ ପୁରାଣରେ ରୋହିଣୀକୁଣ୍ଡକୁ ପଞ୍ଚତୀର୍ଥ ବୋଲି ବର୍ଣ୍ଣନା କରାଯାଇ ନାହିଁ । ଏ ପଞ୍ଚତୀର୍ଥର ଇତିହାସ ପୂର୍ବରେ ସବିଶେଷ ଉଲ୍ଲେଖ କରାଯାଇଅଛି ।

---

## ଦାରୁବ୍ରହ୍ମଙ୍କ ବାର୍ଷିକ ବେଶ

ବର୍ତ୍ତମାନ ଦାରୁବ୍ରହ୍ମଙ୍କ ବାର୍ଷିକ ବେଶ ନିମ୍ନୋକ୍ତ ପ୍ରକାରରେ ହେଉଅଛି, ଯଥା:—

୧ । ଜ୍ୟେଷ୍ଠସ୍ନାନ ପୂର୍ଣ୍ଣିମା ଦିନ 'ଗଣେଶ' ବେଶ ।
୨ । ଆଷାଢ଼ ବାହୁଡ଼ାରଥ ପରଦିନ ଏକାଦଶୀରେ 'ସୁନାବେଶ' (ରାଜାବେଶ) ।
୩ । ଭାଦ୍ର କୃଷ୍ଣ ନବମୀରେ 'ବକାସୁର' ବଧ ବେଶ ।
୪ । ଭାଦ୍ର କୃଷ୍ଣ ଦଶମୀରେ 'ପ୍ରଲମ୍ବାସୁର' ବଧ ବେଶ ( ଏହା ବଳଭଦ୍ରଙ୍କର ହୁଏ ) ।
୫ । ଭାଦ୍ର କୃଷ୍ଣ ଏକାଦଶୀରେ 'କାଳୀୟ ଦଳନ' ବେଶ ।
୬ । ଭାଦ୍ର କୃଷ୍ଣ ଦ୍ୱାଦଶୀରେ 'କୃଷ୍ଣ ବଳରାମ' ବେଶ ।
୭ । ଭାଦ୍ର ଶୁକ୍ଳ ଦ୍ୱାଦଶୀରେ 'ବାମନ' ବେଶ ।
୮ । ଆଶ୍ୱିନ ଶୁକ୍ଳ ଦଶମୀ ଦଶହରାରେ 'ରାଜାବେଶ' ।
୯ । ଆଶ୍ୱିନ ଶୁକ୍ଳ ଏକାଦଶୀଠାରୁ କାର୍ତ୍ତିକ ଶୁକ୍ଳ ଏକାଦଶୀ ପର୍ଯ୍ୟନ୍ତ 'ରାଧା ଦାମୋଦର' ବେଶ ।
୧୦ । କାର୍ତ୍ତିକ ଶୁକ୍ଳ ଏକାଦଶୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପାଞ୍ଚ ଦିନ 'ଲକ୍ଷ୍ମୀ ନାରାୟଣ' ବେଶ ।
୧୧ । ପୌଷ ପୂର୍ଣ୍ଣିମାରେ 'ପୁଷ୍ୟାଭିଷେକ' ବେଶ ।
୧୨ । ମାଘ ଶୁକ୍ଳ ବିଶ୍ୱସ୍ତାରେ 'ପଦ୍ମ' ବେଶ ।
୧୩ । ମାଘ ପୂର୍ଣ୍ଣିମାରେ 'ଗଜ ଉଦ୍ଧାରଣ' ବେଶ ।
୧୪ । ଫାଲ୍‌ଗୁନ ଦୋଳ ପୂର୍ଣ୍ଣିମାରେ 'ରାଜାବେଶ' ।

ଦାରୁବ୍ରହ୍ମଙ୍କ ଏପରି ବେଶ ହେଉଥିବାରୁ ଏ ଦଶାବତାରର କର୍ତ୍ତା । ଅର୍ଥାତ୍ ଏହାଙ୍କଠାରୁ ଅବତାରମାନଙ୍କ ସୃଷ୍ଟି ହୋଇ ଜଗତରେ ଶାନ୍ତି ସ୍ଥାପନ କରାଯାଉଅଛି, ଏଥିରେ ସନ୍ଦେହ ନାହିଁ ।

---

## ଶଙ୍କା ସମାଧାନ

ନୀଳାଚଳନିବାସୀ ଦାରୁ ବିଗ୍ରହମାନଙ୍କ ଆବିର୍ଭାବ ବିଷୟରେ ସାଧାରଣଙ୍କ ମନରେ ଯେଉଁ ଯେଉଁ ଶଙ୍କା ଉପସ୍ଥିତ ହୁଏ, ସେ ସମ୍ବନ୍ଧରେ ମୁଁ ଶାସ୍ତ୍ରୀୟ ପ୍ରମାଣଦ୍ୱାରା ନିମ୍ନୋକ୍ତ ସମାଧାନ ପ୍ରକାଶ

କରୁଅଛୁ । ଆଧୁନିକ ଓଡ଼ିଆ ଓ ଅନ୍ୟାନ୍ୟ ଭାଷାରେ ଲିଖିତ ଦାରୁବିଗ୍ରହ ଜଗନ୍ନାଥାଦି ମୂର୍ତ୍ତି ସମ୍ବନ୍ଧରେ ଅନେକ ମନଗଢ଼ା କଥା ବର୍ଣ୍ଣନା କରାଯାଇଅଛି । କିନ୍ତୁ ସେ ସବୁ କୌଣସି ସଂସ୍କୃତ ଗ୍ରନ୍ଥମାନଙ୍କରୁ ଅନୂଦିତ ନୁହେ ବା ସଂସ୍କୃତ ଗ୍ରନ୍ଥ ସହିତ ତାହାର ସାମଞ୍ଜସ୍ୟ ନାହିଁ । ନାଟକ ଲେଖକମାନେ ଅନେକ ମନଗଢ଼ା କଥା ଦ୍ୱାରା ଲୋକଙ୍କ ମନ ଆକର୍ଷଣ ପାଇଁ ନାଟକରେ ଉଲ୍ଲେଖ କରିଛନ୍ତି, ଏଥିରେ ସନ୍ଦେହ ନାହିଁ । ତେଣୁ ସେ ସବୁଟିରେ ପ୍ରକୃତ ତଥ୍ୟ ଅନୁସନ୍ଧାନ କରି ଲେଖାଯାଇଥିବାର ପ୍ରମାଣ ମିଳେ ।

ଇନ୍ଦ୍ରଦ୍ୟୁମ୍ନଙ୍କ ପୁରୋହିତଙ୍କ କନିଷ୍ଠଭ୍ରାତା ବିଦ୍ୟାପତି ଜଣେ ନିଷ୍ଠାବାନ୍, ଜ୍ଞାନୀ ଓ ପଣ୍ଡିତ ଥିଲେ । ସେ ନୀଳମାଧବଙ୍କ ମିତ୍ର ଶବର ରାଜ ବିଶ୍ୱାବସୁଙ୍କ କନ୍ୟା ଲଳିତାଙ୍କୁ ବିବାହ କରିଥିବା କଥା ଓଡ଼ିଆ ଭାଷା ଲିଖିତ ଜଗନ୍ନାଥ କ୍ଷେତ୍ର ମାହାତ୍ମ୍ୟ ନାମକ ପୁସ୍ତକରେ ଉଲ୍ଲେଖ ଅଛି । ମାତ୍ର ଏହା ସମ୍ପୂର୍ଣ୍ଣ ଅଳିକ ଓ ମନଗଢ଼ା କଥା । ଏଥିରେ ସତ୍ୟତା କିଛି ନାହିଁ । କାରଣ ସ୍ୱୟଂ ନାରଦ ଜଟାଧାରୀ ତପସ୍ୱୀବେଶରେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ରାଜସଭାରେ ଆବିର୍ଭୂତ ହୋଇ ପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କରିବା ପାଇଁ ମହାରାଜାଙ୍କୁ ପ୍ରବର୍ତ୍ତାଇଥିଲେ । ତଦନୁସାରେ ବିଦ୍ୟାପତି ମହାରାଜାଙ୍କ ଅନୁରୋଧ ରକ୍ଷାକରି ପୁଷ୍ପକ ବିମାନ ଆରୋହଣ ପୂର୍ବକ ନୀଳାଚଳକୁ ଆସିଥିଲେ । ସେ ନୀଳାଚଳର ଦକ୍ଷିଣପାର୍ଶ୍ୱରେ ଉପସ୍ଥିତ ହେବା ପରେ ନୀଳାଚଳରୁ ଅବତରଣ କରି ଆସୁଥିବା ଶବରରାଜ ବିଶ୍ୱାବସୁଙ୍କୁ ଭେଟିଥିଲେ । ପରସ୍ପର ମଧ୍ୟରେ ଆଳାପ ଓ ଆଲୋଚନା ପରେ ସେହି ମୁହୂର୍ତ୍ତରେ ବିଶ୍ୱାବସୁ ବିଦ୍ୟାପତିଙ୍କୁ ହାତରେ ଧରି ନୀଳଗିରିର ଉପରିଭାଗକୁ ନେଇ ଯାଇଥିଲେ । ସେଠାରେ ବିଦ୍ୟାପତି ଯଥାକ୍ରମେ ରୋହିଣୀକୁଣ୍ଡ, ଅକ୍ଷୟ-ବଟ ଓ ନୀଳମାଧବ ମୂର୍ତ୍ତିଙ୍କୁ ଦର୍ଶନ କରିଥିଲେ ଏବଂ ସେଠାରୁ ଫେରି ବିଶ୍ୱାବସୁଙ୍କ ଗୃହରେ ରାତିଯାପନ କରିଥିଲେ । ପରଦିନ ପ୍ରାତଃକାଳରେ ତୀର୍ଥରାଜ ମହୋଦଧିରେ ସ୍ନାନ ଓ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ରାଜଧାନୀ ପାଇଁ ସ୍ଥାନ ନିର୍ଣ୍ଣୟ କରି ସେ ସେହିଦିନ ପୁଷ୍ପକ ରଥ ଯୋଗେ ଫେରି ଯାଇଥିଲେ । ଏହି କଥା ସ୍କନ୍ଦପୁରାଣର ଉତ୍କଳଖଣ୍ଡ, ଯାହାର ଅପର ନାମ 'ପୁରୁଷୋତ୍ତମକ୍ଷେତ୍ର ମାହାତ୍ମ୍ୟ' ସଂସ୍କୃତଗ୍ରନ୍ଥରେ ଏବଂ

ସ୍ମୃତିସଙ୍କଳିତ 'ନୀଳାଦ୍ରି ମହୋଦୟ' ନାମକ ପୁରୁଷୋତ୍ତମକ୍ଷେତ୍ର ମାହାତ୍ମ୍ୟ ସଂସ୍କୃତ ଗ୍ରନ୍ଥରେ ସବିଶେଷ ବର୍ଣ୍ଣନା କରାଯାଇଅଛି (ଏହି ଶାସ୍ତ୍ରୀଙ୍କ ଶ୍ରୀପୁରୁଷୋତ୍ତମକ୍ଷେତ୍ର ଗ୍ରନ୍ଥର ୧ମ ଭାଗ ଦ୍ରଷ୍ଟବ୍ୟ) ।

ସୁତରାଂ ଶବରରାଜ ବିଶ୍ୱାବସୁଙ୍କ କନ୍ୟାକୁ ବିଦ୍ୟାପତିଙ୍କ ବିବାହ କରିବାର ଆବଶ୍ୟକତା ଥିବାର ପ୍ରଶ୍ନ ଉଠି ନ ପାରେ ଏବଂ ସମୟର ଅବକାଶ ମଧ୍ୟ ନାହିଁ । ବିଶେଷତଃ ଉକ୍ତ ସଂସ୍କୃତ ଗ୍ରନ୍ଥମାନଙ୍କର କୌଣସିଠାରେ ବିଶ୍ୱାବସୁଙ୍କ ଲଳିତାନାମ୍ନୀ କନ୍ୟା ଥିବା କଥା ମଧ୍ୟ ଉଲ୍ଲେଖ ନାହିଁ । ଏ ଅବସ୍ଥାରେ ସଙ୍କର ଜାତିର ସଂଖ୍ୟା ବୃଦ୍ଧି ପାଇଁ ହିସ୍ପାନିଷ୍ଠ ଶାସ୍ତ୍ରଜ୍ଞ ବିଦ୍ୟାପତିଙ୍କୁ ସଙ୍କର ଜାତିର ସ୍ରଷ୍ଟାରୂପେ ଚିହ୍ନିତ କରିବା ଓ ତାଙ୍କୁ 'ସଙ୍କରୋନରକାୟୈବ କୁଳଘ୍ନାନାଂ କୁଳସ୍ୟଚ' ଇତ୍ୟାଦି ଉକ୍ତିରୁ ନରକଗାମୀ କରିବା ଲେଖକ ଓ ନାଟ୍ୟକାରଙ୍କ ପକ୍ଷରେ ଅତି ନିନ୍ଦନୀୟ ବିଷୟ ଅଟେ । ତେଣୁ ବିଦ୍ୟାପତିଙ୍କ ଶବର କନ୍ୟାଙ୍କୁ ବିବାହ କରିବାର ପ୍ରସଙ୍ଗ କଥା ମନଗଢ଼ା ଓ ଅଳୀକ ଅଟେ ।

ଦାରୁବିଗ୍ରହ ମାନଙ୍କ ଚରଣ ଓ କରପଲ୍ଲବ ତଥା ସୁଭଦ୍ରାଙ୍କ ହସ୍ତ ନ ଥିବା ଏବଂ ସୁଦର୍ଶନଙ୍କ ଆକାର ଚକ୍ରାକାର ନ ହୋଇ ସ୍ତମ୍ଭପରି ହେବା ବିଷୟରେ 'ଜଗନ୍ନାଥ କ୍ଷେତ୍ର ମାହାତ୍ମ୍ୟ' ନାମକ ଓଡ଼ିଆ ଭାଷା ପୁସ୍ତକରେ ଉଲ୍ଲେଖ ଅଛି ଯେ, ଅନନ୍ତ ମହାରଣା ୨୧ ଦିନରେ ଦାରୁବିଗ୍ରହମାନଙ୍କୁ ଗଠନ କରିବାପାଇଁ କହି କରିଥିଲେ । ଇନ୍ଦ୍ରଦ୍ୟୁମ୍ନଙ୍କ ରାଣୀ ଗୁଣ୍ଡିଚାଦେବୀଙ୍କ ଆଦେଶରେ ୧୪ ଦିନପରେ ବିଗ୍ରହ ନିର୍ମାଣର ନିରୋଧ ଗୃହଦ୍ୱାର ଖୋଲିଦିବାରୁ ବିଗ୍ରହମାନଙ୍କର ହାତ ଗୋଡ଼ ନ ଥାଇ ଖଣ୍ଡିଆ କଳେବର ଦେଖାଗଲା । ଏହା ମଧ୍ୟ ଅଳୀକ । ଯେହେତୁ :—

> "ଈଶ୍ୱରଃ ସର୍ବଭୂତାନାଂ ହୃଦ୍‌ଦେଶେଽର୍ଜୁନ ତିଷ୍ଠତି ।
> ଭ୍ରାମୟନ୍ ସର୍ବଭୂତାନି ଯନ୍ତ୍ରାରୂଢ଼ାନି ମାୟୟା ॥"

ଅର୍ଥାତ୍ ଜଗଦୀଶ୍ୱରଙ୍କ ଆଜ୍ଞା ଅଲଂଘ୍ୟ ଅଟେ । ଏ ବିଷୟରେ ପୂର୍ବକଥିତ ସଂସ୍କୃତ ଗ୍ରନ୍ଥମାନଙ୍କରୁ ଉଦ୍ଧୃତ କରି ଏହି ଗ୍ରନ୍ଥରେ ଯାହା ବର୍ଣ୍ଣନା କରାଯାଇଅଛି, ସେଥିରୁ ସ୍ପଷ୍ଟ ପ୍ରକାଶ ଯେ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରତି ଆକାଶ ବାଣୀ ଅନୁସାରେ କେବଳ

ପନ୍ଦର ଦିନ ମାତ୍ର ଉକ୍ତ ଅପୌରୁଷେୟ ଦାରୁକୁ ଗୃହାଭ୍ୟନ୍ତରରେ ନିରୋଧ ରଖି ବର୍ଦ୍ଧକୀ ଦ୍ୱାରା ବିଗ୍ରହ ଗଠନ କରାଯାଇଥିଲା । ଏହି ନିର୍ଦ୍ଦିଷ୍ଟ ଦିନ ପରେ ନାରଦଙ୍କ ଆଜ୍ଞାରେ ଦ୍ୱାର ଖୋଲାଯାଇଥିଲା । ସେ ନିର୍ମାଣ ଗୃହରୁ ସ୍ୱୟଂ ନାରାୟଣରୂପୀ ବର୍ଦ୍ଧକୀ ଅନ୍ତର୍ହିତ ହେବା ଓ ସିଂହାସନରେ ଦାରୁବିଗ୍ରହମାନଙ୍କୁ ବିରାଜିତ ଥିବା ଦେଖି ସମସ୍ତେ ଆନନ୍ଦିତ ହୋଇ ସ୍ତବ କରିଥିଲେ । ହସ୍ତପଦ ଦେଖାଯାଉ ନ ଥିବା ସମ୍ବନ୍ଧରେ ନୀଳାଦ୍ରି ମହୋଦୟରେ ଉଲ୍ଲେଖ ଅଛି ଯେ :—

"ଜଗଦାନନ୍ଦକୋଽଭୂତ ସମୁଦ୍ଧୋଲ୍ଲାସ୍ୟ ଭୁଜଦ୍ୱୟଂ ।
ପଦ୍ମାସନାତ୍ୱୟା ବିପ୍ରା ଗୁପ୍ତପାଦ୍ ପାଣିପଙ୍କଜଃ ।।
ଦାରୁବ୍ରହ୍ମ ସ୍ୱରୂପେଣ ପ୍ରକାଶୋଽଜନି ଭୂତଳେ ।

ଏବଂ ଚ :—

ଗୁପ୍ତପାଦ କରାମ୍ଭୋଜଃ ସମୁଦ୍ଧୋଳିତ ସଦ୍ଭୁଜଃ ।।
ଭକ୍ତାନା ମବନାର୍ଥୈବ ତଥା ଭଦ୍ରାପି ଭଦ୍ରଦା ।।
ଅଧୋଲମ୍ବିତ ହସ୍ତାବ୍ଜା କୁଙ୍କୁମାଭା ଶୁଭାନନା ।
ସୁଦର୍ଶନଂ ସ୍ତମ୍ଭରୂପୀ ବଭୂବ ଵଜ୍ରଭେଦ୍ୟଃ ।।"

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ, ଦାରୁବିଗ୍ରହମାନେ ପଦ୍ମାସନରେ ବିରାଜିତ ଥିବାରୁ ହସ୍ତପଦ ଗୁପ୍ତ ରହି ଯାଇଅଛି । ସୁଭଦ୍ରାଦେବୀ ନିଜ ହସ୍ତଦ୍ୱୟକୁ ଅଧୋଲମ୍ବିତ କରିଥିବାରୁ ଦାରୁପ୍ରତିମା ଶରୀର ସହିତ ସଂଶ୍ଳିଷ୍ଟ ହୋଇଯାଇଅଛି; ତେଣୁ ପୃଥକ୍ ଦେଖାଯାଉ ନାହିଁ । ପାଦ ଓ କରପଲ୍ଲବ ମଧ୍ୟ (ଉକ୍ତ ଶ୍ଳୋକରେ ଗୁପ୍ତପାଦ୍ ପାଣିପଙ୍କଜଃ) ଗୁପ୍ତ ରହି ମୁଠାକଲା ପରି ଆକୃତିରେ ଅଛି ଓ ତାହା ଉପରେ ଶଙ୍ଖଚକ୍ର ଚିତ୍ରିତ କରାଯାଇଅଛି ।

ଜଗନ୍ନାଥାଦି ଦାରୁ ମୂର୍ତ୍ତିମାନଙ୍କରେ ପାଦ-କରପଲ୍ଲବ ଓ କର୍ଣ୍ଣ ନ ଥିବା ବିଷୟରେ ଆଲୋଚନା କଲେ ପ୍ରମାଣିତ ହୁଏ ଯେ, ଏହା ବେଦ ପ୍ରତିପାଦ୍ୟ ବ୍ରହ୍ମମୂର୍ତ୍ତି । ଏ ଭଳି ସାଧାରଣ ଅବତାର ଦେବ-ଦେବୀ ମୂର୍ତ୍ତି ନୁହନ୍ତି ।

କୃଷ୍ଣ ଯଜୁର୍ବେଦୀୟ ଶ୍ୱେତାଶ୍ୱତର ନାମକ ଉପନିଷଦର ତୃତୀୟ ଅଧ୍ୟାୟରେ ବର୍ଣ୍ଣନା କରାଯାଇ ଅଛି ଯେ :—

"ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟଚକ୍ଷୁଃ ସ ଶୃଣୋତ୍ୟକର୍ଣ୍ଣଃ ।
ସବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତାତମାହୁ ରଗ୍ର୍ୟଂ ପୁରୁଷଂ ମହାନ୍ତଂ ।।"

ଅର୍ଥାତ୍ ପରମାତ୍ମା ବ୍ରହ୍ମ ତାଙ୍କ କର ପଲ୍ଲବ ନ ଥିଲେ ସୁଦ୍ଧା ସେ ଗ୍ରହଣ କରନ୍ତି ଏବଂ ପାଦ ନ ଥିଲେ ସୁଦ୍ଧା ସେ ବେଗଗାମୀ ଅଟନ୍ତି । ଚକ୍ଷୁ ନ ଥିଲେ ସୁଦ୍ଧା ସେ ଦେଖନ୍ତି ଏବଂ କର୍ଣ୍ଣ ନ ଥିଲେ ସୁଦ୍ଧା ଶୁଣନ୍ତି । ସେ ସମସ୍ତ ବେଦ୍ୟ ବସ୍ତୁ ଜାଣନ୍ତି, ମାତ୍ର ତାଙ୍କୁ କେହି ଜାଣି ପାରନ୍ତି ନାହିଁ । ବେଦବିତ୍‌ମାନେ ସେ ମହାନ୍ ପୁରୁଷଙ୍କୁ ଅଗ୍ର୍ୟ ଅର୍ଥାତ୍ ଆଦ୍ୟ ବୋଲି କହନ୍ତି ।

ଏଥିରୁ ଦାରୁବ୍ରହ୍ମ ମୂର୍ତ୍ତିରେ କରପଲ୍ଲବ, ପାଦ ଓ କର୍ଣ୍ଣ ନ ଥିବା ବେଦସିଦ୍ଧାନ୍ତ ଅଟେ ।

ଦାରୁମୂର୍ତ୍ତି ଗଠନରେ ଚକ୍ଷୁର ଆକାର ନାହିଁ । କେବଳ ଦାରୁମୂର୍ତ୍ତି ଗଠନ ପରେ ଆକାଶବାଣୀ ଅନୁସାରେ କର୍ପୂର ସହିତ ବହୁପଟ୍ଟବସ୍ତ୍ର ବେଷ୍ଟନ କରାଯାଇ ତା ଉପରେ ଚକ୍ଷୁ ପ୍ରସ୍ତୁତ ଚିତ୍ର କରାଯାଇ ଅଛି । ସେହି ଚିତ୍ରିତ ନେତ୍ର ଯୁଗଳର ଦର୍ଶନ ମାତ୍ରକେ ଦର୍ଶକମାନଙ୍କ ପୁଞ୍ଜୀଭୂତ ପାପରାଶି ପ୍ରଭୁ ହରଣ କରି ଥାଆନ୍ତି ଇତ୍ୟାଦି । ଉତ୍କଳ ଖଣ୍ଡରେ କଥିତ ଅଛି । ଯଥା :—

> "ଯଥୋପଦିଷ୍ଟ ଲେପାଦି ସଂସ୍କାରୈ ର୍ଭୂଷିତଂ ।
> କୃପୟା ସ୍ମେରବଦନ ମୁନତାଯୁତ ବକ୍ଷସଂ ।।
> ଦୀନାନା ମୁଦ୍ଧୃତୌ ନାଥଂ ପ୍ରଲମ୍ବ ଭୁଜପଞ୍ଜରଂ ।
> ପ୍ରବୃଦ୍ଧ ପୂର୍ଣ୍ଣଚନ୍ଦ୍ରାକ୍ଷଂ ହାସଶୋଣାମୃତାଧରଂ ।।
> ପଶ୍ୟତାଂ ଦୃଷ୍ଟି ମାତ୍ରେଣ ହରନ୍ତଂ ପାପ ସଞ୍ଚୟଂ ।
> ପଦ୍ମାସନସ୍ଥିତଂ କୃଷ୍ଣଂ ଦିବ୍ୟାଲଙ୍କାର ଭୂଷିତଂ । ଇତ୍ୟାଦି ।

ଏଥିରୁ ଦୀନମାନଙ୍କ ଉଦ୍ଧାର ପାଇଁ ସେ ବାହୁ ଯୁଗଳ ଉତ୍ତୋଳନ କରି ବିରାଜିତ ଥିବାର ପ୍ରମାଣ ମିଳେ ଏବଂ ପଦ୍ମାସନରେ ଉପବିଷ୍ଟ ହେତୁ ତାଙ୍କ ପାଦ ପ୍ରକାଶିତ ହେବାର ଆବଶ୍ୟକ ନ ଥିବା ମଧ୍ୟ ପ୍ରମାଣିତ ହୁଏ ।

ବଳଭଦ୍ରଦେବ, ପରମାତ୍ମା ବିଷ୍ଣୁଙ୍କ ଅଂଶ ଅନନ୍ତଦେବ;— ଯେ କି ଫଣାଗ୍ରରେ ଚତୁର୍ବର୍ଗ ଭୁବନକୁ ଧାରଣ କରି ଅଛନ୍ତି ଏବଂ ସୁଭଦ୍ରାଦେବୀ ସେହି ବିଷ୍ଣୁଙ୍କ ଶକ୍ତି ଅର୍ଥାତ୍ ଚୈତନ୍ୟରୂପିଣୀ ଲକ୍ଷ୍ମୀ । ସୁତରାଂ ଜଗନ୍ନାଥଙ୍କ ଦାରୁବିଗ୍ରହ ପରି ବଳଭଦ୍ର ଓ ସୁଭଦ୍ରାଙ୍କ ଦାରୁବିଗ୍ରହ ଗଠିତ ହୋଇଥିବା ହେତୁ ଏମାନଙ୍କ ଦାରୁବିଗ୍ରହରେ ମଧ୍ୟ ପାଦ କରପଲ୍ଲବ ଓ କର୍ଣ୍ଣ ନାହିଁ ।

ଶ୍ରୀପୁରୁଷୋତ୍ତମ କ୍ଷେତ୍ରସ୍ଥ ପଣ୍ଡିତମାନଙ୍କ ସିଦ୍ଧାନ୍ତ ଏହି ଯେ ଜଗନ୍ନାଥଦେବଙ୍କ ମୂର୍ତ୍ତି ପ୍ରଣବ ଓଁକାରରୂପୀ । ସେ ଏହି ମୂର୍ତ୍ତିର ଦର୍ଶନ ଦେଇ 'ଓଁ ଇତ୍ୟେକାକ୍ଷରଂ ବ୍ରହ୍ମ' ଏହି ବାକ୍ୟର ସାର୍ଥକତା ଘୋଷଣା କରୁଅଛନ୍ତି । ଯଦ୍ଦ୍ୱାରା ଭକ୍ତମାନେ ଏହି ଓଁକାର ପ୍ରଣବ ମୂର୍ତ୍ତିକୁ ଦର୍ଶନ କରି ମୁକ୍ତିଲାଭ କରି ପାରିବେ ।

ସୁଦର୍ଶନଙ୍କ ସମ୍ବନ୍ଧରେ ସ୍କନ୍ଦପୁରାଣରେ ଉଲ୍ଲେଖ ଅଛି ଯେ 'ନମସ୍ତେ ନଖ୍ୟ ବଳସଦ୍ ବୈଷ୍ଣବାସ୍ତ୍ର ନକେତନ'; ଅର୍ଥାତ୍ ସୁଦର୍ଶନଙ୍କୁ ବୈଷ୍ଣବ ଅସ୍ତ୍ରମାନଙ୍କ ଆଗାର ବୋଲି କୁହାଯାଇଅଛି । ତେଣୁ ବହୁବିଧ ଅସ୍ତ୍ରମାନଙ୍କ ଆଗାର ହେତୁ ଚକ୍ରାକାର ନ ହୋଇ ସ୍ତମ୍ଭାକାର ହେବା ନୀଳାଦ୍ରି ମହୋଦୟରେ ସ୍ପଷ୍ଟରୂପେ ଉଲ୍ଲେଖ କରାଯାଇଅଛି ।

ଓଡ଼ିଆ ଭାଷା ଲିଖିତ ପୁସ୍ତକମାନଙ୍କରେ ଉଲ୍ଲେଖ ଅଛି ଯେ, ଶ୍ରୀକୃଷ୍ଣଙ୍କ ତିରୋଧାନ ପରେ ତାଙ୍କ ଅଦଗ୍ଧ ଶରୀର ଦାରୁରୂପରେ ନୀଳାଚଳ ନିକଟସ୍ଥ ମହୋଦଧିରେ ଭାସୁଥିଲା । ତହିଁରୁ ଅନନ୍ତ ମହାରଣା ଜଗନ୍ନାଥାଦି ମୂର୍ତ୍ତିଙ୍କୁ ଗଠନ କରିଥିଲେ । ଏ କଥାରେ ସତ୍ୟତା କିଛି ନାହିଁ । ସ୍କନ୍ଦମହାପୁରାଣୋକ୍ତ ଉତ୍କଳଖଣ୍ଡ ନାମକ ପୁରୁଷୋତ୍ତମ କ୍ଷେତ୍ରରେ ଉଲ୍ଲେଖ ଅଛି ଯେ, ଶ୍ୱେତଦ୍ୱୀପବାସୀ ଅବ୍ୟୟ ବିଷ୍ଣୁଙ୍କ ଅଙ୍ଗରୁ ସ୍ଖଳିତ ରୋମ ତରୁରୂପ ହୋଇ ଶ୍ୱେତଦ୍ୱୀପରୁ ଭାସି ଆସି ସମୁଦ୍ର ତଟରେ ଲାଗିଥିଲା ।

ଇନ୍ଦ୍ରଦ୍ୟୁମ୍ନ ପ୍ରତି ନାରଦ ବାକ୍ୟଂ :—

"ଉପସ୍ଥିତଂତେ ତଦ୍ ଭାଗ୍ୟଂ ସ୍ୱପ୍ନେଯଦ୍ ଦୃଷ୍ଟବାନ୍ ପୁରା ।
ଶ୍ୱେତଦ୍ୱୀପେ ବିଶ୍ୱମୂର୍ତ୍ତି ର୍ଦ୍ଦ୍ରୁମୋନଯୋ ବିଷ୍ଣୁରବ୍ୟୟଂ ॥
ତଦଙ୍ଗ ସ୍ଖଳିତଂ ରୋମ ତରୁତ୍ୱ ମୁପପଦ୍ୟତେ ॥"

ଏହା ଅପୌରୁଷେୟ ଦାରୁ ବୋଲି ମଧ୍ୟ ବେଦରେ ଉଲ୍ଲେଖ ଅଛି । ଆକାଶବାଣୀ ଅନୁସାରେ ସ୍ୱୟଂ ନାରାୟଣ ବର୍ଦ୍ଧକୀ ବେଶରେ ମୂର୍ତ୍ତି ଗଠନ କରିଥିଲେ । ଏହି ଘଟନା ସ୍ୱାୟଂଭୁବ ମନୁଙ୍କ ଦ୍ୱିତୀୟ ଚତୁର୍ଯୁଗରେ ଘଟିଥିଲା; ଯାହା ଆଜକୁ ୧୯୭୮୬ ୨୯୦୫୩ ବର୍ଷ ହେଲା ଅତୀତ ହୋଇଅଛି । ଏ ଅବସ୍ଥାରେ ଶ୍ରୀକୃଷ୍ଣଙ୍କ ତିରୋଧାନ ଯାହାକି ଗତ ଦ୍ୱାପରର ଶେଷ ଓ କଳିର ପ୍ରାରମ୍ଭରେ ଅର୍ଥାତ ୫୦୫୩ ବର୍ଷ ହେଲା ଘଟିଅଛି । ଏଥିରେ

ଶ୍ରୀକୃଷ୍ଣଙ୍କ ଅଦର୍ଶ୍ୟ ମିଶ୍ରିତ ଅପୌରୁଷେୟ ଦାରୁର ଉଦ୍ଭବ କଥା ହାସ୍ୟଜନକ ଅଟେ । ସେହିପରି ଦ୍ୱାପର ଯୁଗର କୃଷ୍ଣ, ତାଙ୍କର ବଡ଼ ଭାଇ ବଳରାମଙ୍କର ଓ କୃଷ୍ଣଙ୍କ ବୈମାତ୍ରେୟ ଭଗିନୀ ସୁଭଦ୍ରାଙ୍କ ପ୍ରତିମୂର୍ତ୍ତି ନୀଳାଚଳସ୍ଥ ଦାରୁବିଗ୍ରହ ଜଗନ୍ନାଥଙ୍କସହ ବଳଭଦ୍ର ଓ ସୁଭଦ୍ରା ରୂପେ ବିରାଜିତ ଥିବା କଥା ମଧ୍ୟ ଅଳୀକ ଓ ହାସ୍ୟାସ୍ପଦ ଅଟେ ।

କାରଣ ବଳଭଦ୍ର ଓ ସୁଭଦ୍ରାଙ୍କ ଆବିର୍ଭାବ ଜଗନ୍ନାଥଙ୍କ ସମ୍ବତ ୧୯୭୮୭୨୯୭ ୫୩ ବର୍ଷ ପୂର୍ବର କଥା । କୃଷ୍ଣଙ୍କ ପରି ତାଙ୍କ ବଡ଼ଭାଇ ବଳଭଦ୍ର ଓ ବୈମାତ୍ରେୟ ଭଗିନୀ ସୁଭଦ୍ରାଙ୍କ କଥା ପୂର୍ବବର୍ଣ୍ଣିତ ୫୦୫୩ ବର୍ଷର କଥା । ବଳଭଦ୍ର ଶବ୍ଦର ଅର୍ଥ ହେଉଅଛି ଯେ:—

"ବଳବାନପି ଭଦ୍ରଃ-ସୌମ୍ୟଃ" ବଳଭଦ୍ରଃ ।

ଅର୍ଥାତ—ସେ ସାତିଶୟ ବଳବାନ୍ ହୋଇ ମଧ୍ୟ ସୌମ୍ୟ ଅଟନ୍ତି । ସେ ସ୍ୱୟଂ କୃଷ୍ଣଙ୍କ ଅଂଶ ଅନନ୍ତଦେବ ବୋଲି ଯାହା ଏହି ଗ୍ରନ୍ଥରେ ବର୍ଣ୍ଣିତ ଅଛି, ତାହାଙ୍କୁ ସେ ଅନନ୍ତ ନାରାୟଣ ଅଟନ୍ତି ।

ସୁଭଦ୍ରା ଶବ୍ଦର ଅର୍ଥ ଏହି ଯେ:—

"ସୁଷ୍ଠୁ ଭଦ୍ରଂ ଯସ୍ୟାଃ ସକାଶାତ୍ ସା ସୁଭଦ୍ରା"

ଅର୍ଥାତ ଯାହାଙ୍କଠାରୁ ସାତିଶୟ ମଙ୍ଗଳ ଉଦ୍ଭବ ହୋଇଅଛି ।

"ସୃଷ୍ଟି ସ୍ଥିତି ବିନାଶାଦ କର୍ତ୍ତ୍ରୀଣାଂ ପରମାତ୍ମନଃ ।
ତ୍ୱମେକା ଶକ୍ତିରତୁଳା ତ୍ୱାଂ ବିନାସୋଽପିନେଶ୍ୱରଃ"

ଏଥିରୁ ସ୍ପଷ୍ଟ ଯେ ସୁଭଦ୍ରାଦେବୀ ପରମାତ୍ମାଙ୍କ ଆଦିଶକ୍ତି ପ୍ରକୃତି ଅଟନ୍ତି । ଏବଂ କଥିତ ଅଛି ଯେ: —

ସୁଭଦ୍ରା-ଶୁଭ୍ରବଦନା ଚନ୍ଦ୍ରିକାଽନନ୍ଦଧାରିଣୀ ।
ଲକ୍ଷ୍ମୀଃ ପ୍ରାଣପ୍ରିୟେଶ୍ୱଂ ସବ ଚୈତନ୍ୟ ରୂପିଣୀ ॥

ଅର୍ଥାତ୍ ସୁଭଦ୍ରା କୃଷ୍ଣଙ୍କର ପ୍ରିୟତମା ଲକ୍ଷ୍ମୀ ଅଟନ୍ତି । ଏହା ଜାଣିବା ଆବଶ୍ୟକ ଯେ, ବଳଭଦ୍ର ଓ ସୁଭଦ୍ରା ଶବ୍ଦ ଗତ ଦ୍ୱାପର ଯୁଗର କୃଷ୍ଣାବତାର ସମୟର ବହୁପୂର୍ବରେ କଥିତ ହେଉଥିଲା । ଦ୍ୱାପର ଯୁଗର ସୁଭଦ୍ରାଙ୍କର ଇତିହାସ ଏହି ଯେ, କୃଷ୍ଣଙ୍କ ବିମାତା ରୋହିଣୀଙ୍କ ଗର୍ଭରୁ ତାହାଙ୍କର ଜନ୍ମ ଓ ତାଙ୍କୁ ଅର୍ଜୁନ ବିବାହ କରିଥିଲେ । ଅର୍ଜୁନଙ୍କ ଔରସରେ ତାଙ୍କ ଗର୍ଭରୁ ଅଭିମନ୍ୟୁ ଜାତ ହୋଇଥିଲେ । ପାଣ୍ଡବମାନଙ୍କର ବନବାସ କାଳରେ ସୁଭଦ୍ରା ତାଙ୍କ ପୁତ୍ର ସହିତ ପିତୃଗୃହରେ ଅବସ୍ଥାନ କଲେ । କୁରୁକ୍ଷେତ୍ର ଯୁଦ୍ଧରେ ଅଭିମନ୍ୟୁଙ୍କର ମୃତ୍ୟୁ

ହେବାରୁ ଏ ଶୋକସନ୍ତପ୍ତା ହୋଇଥିଲେ । କିନ୍ତୁ ଅଭିମନ୍ୟୁଙ୍କର ସ୍ତ୍ରୀ ଉତ୍ତରାଙ୍କ ଗର୍ଭରୁ ପରୀକ୍ଷିତଙ୍କ ଜନ୍ମ ହେବାରୁ ସେ କଥଞ୍ଚିତ ସାନ୍ତ୍ୱନା ଲାଭ କଲେ । ପରେ ପାଣ୍ଡବମାନେ ମହାପ୍ରସ୍ଥାନ କରିବାରୁ ପୌତ୍ର ଅର୍ଥାତ ପରୀକ୍ଷିତଙ୍କ ସଙ୍ଗରେ ସେହି ସୁଭଦ୍ରା ହସ୍ତିନାରେ ରହି ଶେଷ ଜୀବନଯାପନ କଲେ । ଏପରି ଐତିହାସିକ ଘଟନାସମ୍ବଳିତ ଅର୍ଜ୍ଜୁନଙ୍କ ସ୍ତ୍ରୀ ସୁଭଦ୍ରାଙ୍କୁ ନୀଳାଚଳବିହାରୀ ଦାରୁବ୍ରହ୍ମ ଜଗନ୍ନାଥଙ୍କ ଭକ୍ତିସ୍ୱରୂପିଣୀ ( ନୀଳାଚଳ ମନ୍ଦିରରେ ବିରାଜିତ ) ସୁଭଦ୍ରା ଦେବୀଙ୍କୁ କୃଷ୍ଣଙ୍କ ବୈମାତ୍ରେୟ ଭଗିନୀ ଓ ଅର୍ଜ୍ଜୁନଙ୍କ ସ୍ତ୍ରୀ ବୋଲି ଚିତ୍ରିତ କରିବା ଅତୀବ ହାସ୍ୟାସ୍ପଦ ଓ ଅନୁଚିତ ଅଟେ । ଜଗନ୍ନାଥଙ୍କ ବିଗ୍ରହକୁ ବୌଦ୍ଧଙ୍କ ଅବତାର ବୋଲି ମଧ୍ୟ ଅନେକ ଲୋକ କହିଥାନ୍ତି କିନ୍ତୁ ତାହା ପୂର୍ବୋକ୍ତ ପରି ଅମୂଳକ ଓ ମନଗଢ଼ା କଥା; ଯେହେତୁ ସ୍କନ୍ଦମହାପୁରାଣରେ ଉକ୍ତ ଅଛି ଯେ :—

"ଅତ୍ରାବତୀର୍ଣ୍ଣୋ ଭଗବାନ୍ ପ୍ରଯାତ୍ୟ ନ୍ୟତ୍ର କାର୍ଯ୍ୟତଃ ।
ନିଷ୍ପାଦ୍ୟ କୃତ୍ୟଂ ପୃଥ୍ୱ୍ୟାଂହି ପୁନରତ୍ରୈବ ତିଷ୍ଠତି ॥
*  *  *  *
ଦଶାବତାର ସଙ୍କାଶ୍ୟ କଥିତା ପୁରୁଷୋତ୍ତମ ମନ୍ତ୍ରୀ ।"

ଅର୍ଥାତ୍—ଏହି ପୁରୁଷୋତ୍ତମ କ୍ଷେତ୍ରରେ ସ୍ୱୟଂ ଭଗବାନ୍ ସର୍ବଦା ବିରାଜିତ ଅଛନ୍ତି; କାର୍ଯ୍ୟବଶତଃ ଅନ୍ୟତ୍ର ଅବତାର ରୂପେ ଗମନ କରିଥାଆନ୍ତି । ସେଠାରେ କୃତ୍ୟ ସମ୍ପାଦନ କରି ପୁଣି ଏହି କ୍ଷେତ୍ରକୁ ଆସି ଅବସ୍ଥାନ କରନ୍ତି । ସୁତରାଂ ନୀଳାଚଳବିହାରୀ ଭଗବାନଙ୍କଠାରୁ ଦଶାବତାରର ସୃଷ୍ଟି ହୋଇଅଛି । ପୁରାଣମାନଙ୍କରେ ବୁଦ୍ଧଦେବଙ୍କୁ ମତ୍ସ୍ୟାଦି ଦଶାବତାର ମଧ୍ୟରେ ନବମ ଅବତାର ବୋଲି ବର୍ଣ୍ଣନା କରାଯାଇଅଛି ଏବଂ ସେହାଙ୍କ ପରେ କଳଙ୍କୀ ଦଶମ ଅବତାର ରୂପରେ ଆବିର୍ଭୂତ ହେବେ । ବିଶେଷତଃ ଜାଣିବା ଉଚିତ ଯେ :—

"ସମୁଦ୍ରାଦ୍ଧି ତରଙ୍ଗାଃ କ୍ୱଚନ ସମୁଦ୍ରୋତରଙ୍ଗାଃ" ।

ଅର୍ଥାତ — ସମୁଦ୍ରରୁ ତରଙ୍ଗର ଉତ୍ପତ୍ତି ହୁଏ । କୌଣସି ପ୍ରକାରରେ ତରଙ୍ଗରୁ ସମୁଦ୍ରର ଉତ୍ପତ୍ତି ହୁଏ ନାହିଁ । ଏଣୁ ନୀଳାଚଳବିହାରୀଙ୍କ ଅଂଶରୁ ବୁଦ୍ଧଙ୍କ ଆବିର୍ଭାବ ହେବା କଥା ଯୁକ୍ତି ସମ୍ମତ କିନ୍ତୁ ତାହାର ବିପରୀତରେ ବୁଦ୍ଧଙ୍କଠାରୁ ଜଗନ୍ନାଥାଦି ଦାରୁବିଗ୍ରହଙ୍କ ଆବିର୍ଭାବର କଳ୍ପନା କଥା ଅତୀବ ବାତୁଳତା ମାତ୍ର ।

# ଓଁ ତତ୍ସତ

## ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ଦେବଗଣଙ୍କର ସ୍ତବ

ବେଦୋକ୍ତ ସହସ୍ରଶୀର୍ଷା ଇତ୍ୟାଦି ସୂକ୍ତ ବାକ୍ୟର ଶ୍ଳୋକାକାରରେ ବ୍ୟାସଦେବ ଯେଉଁ ବ୍ୟାଖ୍ୟା କରିଅଛନ୍ତି, ତାହା ନିମ୍ନରେ ପ୍ରକାଶ କରାଗଲା ।

"ସହସ୍ର ଶୀର୍ଷାଃ ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସଭୂମିଂ ସର୍ବତୋ ବ୍ୟାପ୍ୟ ଅତ୍ୟତିଷ୍ଠଦ୍ଦଶାଙ୍ଗୁଳଂ ॥"

ଯାହାଙ୍କ ସହସ୍ର ସହସ୍ର ମସ୍ତକ, ସହସ୍ର ସହସ୍ର ନେତ୍ରାଦି ଜ୍ଞାନେନ୍ଦ୍ରିୟ, ଓ ସହସ୍ର ସହସ୍ର ପାଦାଦି କର୍ମେନ୍ଦ୍ରିୟ ଅଛନ୍ତି; ସେହି ନିଖିଳ ପାର୍ଥିବ-ଦେହ ବ୍ୟାପୀ ପରମାତ୍ମା ପୁରୁଷ ପ୍ରାଣୀର ନାଭିର ଊର୍ଦ୍ଧ୍ୱଭାଗସ୍ଥ ହୃଦୟପଦ୍ମ ମଧ୍ୟରେ ଦଶ ଅଙ୍ଗୁଳି ସ୍ଥାନ ଅଧିକାର କରି ବିଜ୍ଞାନ ସ୍ୱରୂପ ବିରାଜମାନ କରୁଅଛନ୍ତି ।

"ଯଃ ପୁମାନ୍ ପରମଂବ୍ରହ୍ମ ପରମାତ୍ମେତି ଗୀୟତେ ।
ଭୂତଂ ଭବ୍ୟଂ ଭବିଷ୍ୟଚ୍ଚ ସର୍ବଂପୁରୁଷ ଏବତତ୍ ॥
ଏତା ବାନସ୍ୟ ମହିମା ଜ୍ୟାୟାନେଷ ପୁମାନ୍ ପ୍ରଭୁଃ ॥"

ଯେଉଁ ପରମ ପୁରୁଷ ପରମାତ୍ମା ପରଂବ୍ରହ୍ମ ନାମରେ କଥିତ, ସେ ଭୂତ ବର୍ତ୍ତମାନ ଓ ଭବିଷ୍ୟତ୍ ତ୍ରିକାଳସ୍ୱରୂପ ଏବଂ ତାହାଙ୍କ ମହିମା ସର୍ବସ୍ଥାନ ଓ ସର୍ବକାଳବ୍ୟାପୀ ହେତୁ ଏହି ପ୍ରଭୁ ସର୍ବ ଜ୍ୟେଷ୍ଠ ଓ ଶ୍ରେଷ୍ଠ ପୁରୁଷ ଅଟନ୍ତି ।

"ପାଦୋଽସ୍ୟ ବିଶ୍ୱାଭୂତାନି ତ୍ରିପାଦସ୍ୟା ମୃତଂଦିବି ।
ଛନ୍ଦାଂସି ଜଜ୍ଞିରେ ତ୍ରିଷ୍ଟୁପତୋ ଯଜ୍ଞପୁମାନପି ॥
ତ୍ରିଁଶ୍ଚୋଽନ୍ୟାସ୍ତ ବ୍ୟଞ୍ଜାନ୍ସନ୍ତ ଗାବୋମେଷା-ଦୟସ୍ତଥା ॥"

ଏହାଙ୍କ ଏକ ପାଦ ନିଖିଳ ପଞ୍ଚଭୂତ ଓ ଅପର ତିନିପାଦ ଋକ୍ ସାମ ବେଦତ୍ରୟ ଅଟନ୍ତି ।

ଏହି ପାଦତ୍ରୟ ସ୍ୱର୍ଗର ମୁକ୍ତିଦ୍ୱାର ସ୍ୱରୂପ । ହେ ପ୍ରଭୋ ! ଆପଣଙ୍କଠାରୁ ଛନ୍ଦ ଅର୍ଥାତ ବେଦମାନେ ଉତ୍ପନ୍ନ ହୋଇ ଅଛନ୍ତି ।

ତନ୍ନିଜତ୍ୱରୁ ଯଜ୍ଞପୁରୁଷର ଉତ୍ପତ୍ତି ହୋଇଅଛି । ଆପଣଙ୍କଠାରୁ ପୁଣି ଅନ୍ୟାନ୍ୟ ଗୋମେଷାଦି ପଶୁମାନଙ୍କର ଉତ୍ପତ୍ତି ହୋଇଅଛି ।

"ବ୍ରାହ୍ମଣା ମୁଖତୋଜାତା ବାହୁଜାଃ କ୍ଷତ୍ରିୟାସ୍ତବ ।
ବୈଶ୍ୟାସ୍ତବୋରୁଜାଃ ପଦ୍‌ଭ୍ୟାଂତଥା ଶୂଦ୍ରାଶ୍ଚସମାଗତାଃ ।।"

ତୁମ୍ଭ ମୁଖରୁ ବ୍ରାହ୍ମଣମାନେ, ବାହୁରୁ କ୍ଷତ୍ରିୟମାନେ, ଉରୁରୁ ବୈଶ୍ୟମାନେ ଏବଂ ପାଦରୁ ଶୂଦ୍ରମାନେ ଜାତ ହୋଇଅଛନ୍ତି ।

"ମନସଶ୍ଚନ୍ଦ୍ରମାଜାତ ଶ୍ଚକ୍ଷୁଷସ୍ତେ ଦିବାକରଃ ।
କର୍ଣ୍ଣାଭ୍ୟାଂ ଶ୍ୱସନଃ ପ୍ରାଣୈ ର୍ବହ୍ନ୍ୟାସ୍ୟା ହବ୍ୟବାଡ଼ପି ।।"

ତୁମ୍ଭ ମନରୁ ଚନ୍ଦ୍ର, ଚକ୍ଷୁରୁ ସୂର୍ଯ୍ୟ, କର୍ଣ୍ଣଦ୍ୱୟରୁ ପ୍ରାଣାଦି ପଞ୍ଚବାୟୁ ଏବଂ ଜିହ୍ୱାରୁ ଅଗ୍ନି ଉତ୍ପତ୍ତି ହୋଇଅଛନ୍ତି ।

"ନାଭେସ୍ତେ ଗଗନଂ ଦ୍ୟୌଶ୍ଚ ମୂର୍ଦ୍ଧ୍ନସ୍ତେ ସମବର୍ତ୍ତତ ।
ପାଦାଭ୍ୟାଂତେ ଧରାଜାତା ଦିଶଃଶ୍ରୋତ୍ରୌ ଶ୍ରୁତେର୍ଦ୍ଧୃତାଃ ।।"

ତୁମ୍ଭ ନାଭିରୁ ଆକାଶ, ମସ୍ତକରୁ ସ୍ୱର୍ଗ, ପାଦଦ୍ୱୟରୁ ପୃଥିବୀ ଓ କର୍ଣ୍ଣରୁ ଅଷ୍ଟଦିଗ ଉତ୍ପତ୍ତି ହୋଇଅଛନ୍ତି ।

"ସପ୍ତାସନ୍ ପରିଧୟସ୍ତ୍ୱତ୍ତ ଏକବିଂଶତ୍ ସମିତ୍ତବେ ।
ଚରାଚରାଃ ସର୍ବ ଭାବାସ୍ତ୍ୱତ୍ତଏବହି ଯଜ୍ଞିରେ ।।"

ଆପଣ ଯଜ୍ଞପୁରୁଷ ରୂପରେ ଆବିର୍ଭୂତ ହେଲେ । ଆପଣଙ୍କଠାରୁ ଉତ୍ପନ୍ନ ସମୁଦ୍ର, ଯଜ୍ଞଭୂମିର ପରିଧି ଅର୍ଥାତ ବେଡ଼ାସ୍ୱରୂପ ଓ ଏକବିଂଶତି ଛନ୍ଦ ସମିଧ ହୋଇଥିଲେ । ଏହି ଚରାଚର ନିଖିଳ ଜଗତ ଆପଣଙ୍କଠାରୁ ଉତ୍ପନ୍ନ ହୋଇଅଛି ।

"ତ୍ୱମେବ ଜଗତାଂନାଥ ସ୍ତ୍ୱମେବ ପରିପାଳକଃ ।
ଉଗ୍ରରୂପସ୍ତ ସଂହର୍ତ୍ତା ତ୍ୱମେବ ପରମେଶ୍ୱର ।।"

ହେ ପରମେଶ୍ୱର ? ତୁମ୍ଭେହିଁ ନିଖିଳ ଜଗତର ନାଥ । ତୁମ୍ଭେହିଁ ଜଗତର ପାଳନକର୍ତ୍ତା ଏବଂ ତୁମ୍ଭେହିଁ ଉଗ୍ରରୂପ ଧାରଣ କରି ଜଗତର ସଂହାର କରିଥାଅ ।

"ତ୍ୱମେବ ଯଜ୍ଞୋ ଯଜ୍ଞାଂଶ ସ୍ତ୍ୱଂ ଯଜ୍ଞେଶଃ ପରାତ୍ପରଃ ।
ଶବ୍ଦ ବ୍ରହ୍ମ ପରଂବ୍ରହ୍ମ ଶବ୍ଦ ବ୍ରହ୍ମାପି ବିଶ୍ୱରାଟ୍ ।।"

ତୁମ୍ଭେ ଯଜ୍ଞ, ଯଜ୍ଞାଂଶ, ପରସ୍ପର ଯଜ୍ଞେଶ୍ୱର ବିଶ୍ୱସମ୍ରାଟ୍ ଏବଂ ଶବ୍ଦବ୍ରହ୍ମ ଅଟ ।

"ସ୍ୱରାଟ୍ ସମ୍ରାଟ୍ ଜଗନ୍ନାଥ ବିରାଡ଼ସି ଜଗତ୍ପତେ ।
ଅଧଶ୍ଚୋର୍ଦ୍ଧ୍ୱଂ ଚ ତିର୍ଯ୍ୟକ୍ ତ୍ୱଂ ତ୍ୱୟା ବ୍ୟାପ୍ତଂ ଜଗନ୍ମୟ ।।"

ହେ ଜଗନ୍ନାଥ ? ତୁମ୍ଭେ ସ୍ୱପ୍ରକାଶ ଏବଂ ବ୍ରହ୍ମ ସ୍ୱରୂପ ସମ୍ରାଟ ଓ ବିରାଟ ପୁରୁଷ ଅଟ । ଅଧ ଊର୍ଦ୍ଧ୍ୱ ଓ ପାର୍ଶ୍ୱ ପ୍ରଦେଶ ସବୁ ତୁମ୍ଭ ଦ୍ୱାରା ପରିବ୍ୟାପ୍ତ ହୋଇଅଛୁ ।

ପ୍ରାପ୍ନୁବନ୍ତି ପରଂସ୍ଥାନଂ ତ୍ୱାଂ ଯଜନ୍ତଶ୍ଚ ଯାଜ୍ଞିକାଃ ।
ଭୋଜ୍ୟଂ ଭୋକ୍ତା ହବିର୍ହୋତା ହବନଂ ତ୍ୱଂ ଫଳପ୍ରଦଃ ।।"

ଯାଜ୍ଞିକମାନେ ତୁମ୍ଭଙ୍କୁ ପୂଜା କରି ପରମ ସ୍ଥାନ ଲାଭ କରନ୍ତି । ତୁମ୍ଭେ ଭୋଜ୍ୟ ( ଭୋଜନଦ୍ରବ୍ୟ ), ଭୋକ୍ତା ( ଭୋଜନ କର୍ତ୍ତା ), ଯଜ୍ଞରହବି ( ହୋମର ଘୃତ ), ହୋତା ( ହୋମ-କର୍ତ୍ତା ), ହବନ ( ହୋମ ସ୍ୱରୂପ ) ଏବଂ ଯଜ୍ଞର ଫଳଦାତା ଅଟ ।

"ସମସ୍ତ କର୍ମ ଭୋକ୍ତାତ୍ୱଂ ସର୍ବକର୍ମାତ୍ମକଃ ପ୍ରଭୋ ।
ସର୍ବ କର୍ମୋପକରଣଂ ସର୍ବ କର୍ମ ଫଳପ୍ରଦଃ ।।"

ତୁମ୍ଭେ ସର୍ବ କର୍ମର ଭୋଗକର୍ତ୍ତା ସର୍ବ କର୍ମ ସ୍ୱରୂପ, ସର୍ବ କର୍ମର ଉପକରଣ ଏବଂ ସର୍ବ କର୍ମର ଫଳଦାତା ଅଟ ।

"କର୍ମପ୍ରେରୟିତା ତ୍ୱଂହି ଧର୍ମକାମାର୍ଥ ସିଦ୍ଧିଦଃ ।
ତ୍ୱାମୃତେ ମୁକ୍ତିଦଃ କୋଽନ୍ୟୋ ହୃଷିକେଶ ନମୋସ୍ତୁତେ ।।"

ତୁମ୍ଭେ କର୍ମର ପ୍ରେରଣାଦାତା ଏବଂ ସମସ୍ତ ଧର୍ମ ଅର୍ଥ କାମନାର ସିଦ୍ଧିଦାତା ଅଟ ! ହେ ହୃଷିକେଶ ( ଇନ୍ଦ୍ରିୟସକଳଙ୍କ ଈଶ ) । ତୁମ୍ଭ ବ୍ୟତୀତ ଅନ୍ୟ କେହି ମୁକ୍ତିଦାତା ନୁହନ୍ତି । ତୁମ୍ଭଙ୍କୁ ଆମ୍ଭମାନଙ୍କର ନମସ୍କାର । ।

"ନମୋଽସ୍ତ୍ୱନନ୍ତାୟ ସହସ୍ର ମୂର୍ତ୍ତୟେ ।
ସହସ୍ର ପାଦାକ୍ଷି ଶିରୋରୁବାହବେ ।।
ସହସ୍ର ନାମ୍ନେ ପୁରୁଷାୟ ଶାଶ୍ୱତେ ।
ସହସ୍ର କୋଟି ଯୁଗଧାରିଣେ ନମଃ ।।"

ଯାହାଙ୍କର ଅନ୍ତ ନାହିଁ, ଅଥଚ ସହସ୍ର ସହସ୍ର ମୂର୍ତ୍ତି ଓ ସହସ୍ର ସହସ୍ର ପାଦ, ଚକ୍ଷୁ, ଶିର ଉରୁ ବାହୁ ଅଛି ଏବଂ ଯେ ସହସ୍ର ସହସ୍ର

ନାମରେ ଅଭିହିତ; ସେହି ସହସ୍ର କୋଟି ଯୁଗଧାରୀ ଶାଶ୍ୱତ ପୁରୁଷୋତ୍ତମଙ୍କୁ ନମସ୍କାର କରୁଅଛୁ ।

"ବୟଂ ଚ୍ୟୁତାଧିକାରିଣ୍ୟାଂ ପ୍ରପନ୍ନାଃ ଶରଣଂ ପ୍ରଭୋ ।
ତାଦ୍ରନଃ ପୁଣ୍ଡରୀକାକ୍ଷ ଅଗତୀନାଂ ଗତିର୍ଭବ ।।"

ହେ ପ୍ରଭୋ ! ଆମ୍ଭେମାନେ ନିଜ ନିଜ ଅଧିକାରରୁ ବିଚ୍ୟୁତ ହୋଇ ଆପଣଙ୍କ ଶରଣାଗତ ହୋଇଅଛୁଁ । ହେ ପୁଣ୍ଡରୀକାକ୍ଷ ! ଆମ୍ଭେମାନେ ମୋକ୍ଷବିହୀନ । ତେଣୁ ଆମ୍ଭମାନଙ୍କ ମୋକ୍ଷଦାୟକ ହୁଅ ଓ ପରିତ୍ରାଣ କର ।

"ସଂସାର ପତିତ ସୈ୍ୟକୋ ଜନ୍ତୋସ୍ତ୍ୱଂ ଶରଣଂ ପ୍ରଭୋ ।
ତ୍ୱତ୍ ସୃଷ୍ଟୌ ତ୍ୱାଦୃଶୋନାସ୍ତି ଯୋଦୀନ ପ୍ରତିପାଳକଃ ।।"

ସଂସାର ସାଗରରେ ପତିତ ଜୀବର ଉଦ୍ଧାର ପାଇଁ ତୁମ୍ଭେ ଏକମାତ୍ର ଶରଣ; ଅର୍ଥାତ୍ ରକ୍ଷକ । ତୁମ୍ଭ ସୃଷ୍ଟିରେ ତୁମ୍ଭପରି ଆଉ କେହି ନାହାନ୍ତି ଯେ କି ଦୀନଦୁଃଖୀମାନଙ୍କ ପ୍ରତିପାଳକ ହେବ ।

"ଦୀନାନାଥୈକ ଶରଣଂ ପିତାତ୍ୱଂ ଜଗତଃ ପ୍ରଭୋ ।
ପାତା ପୋଷ୍ଟା ତ୍ୱମେବେଶ ସର୍ବାପଦ୍ ବିନିବାରକଃ ।।"

ତୁମ୍ଭେ ଦୀନ ଓ ଅନାଥମାନଙ୍କ ଏକମାତ୍ର ରକ୍ଷାକର୍ତ୍ତା । ହେ ପ୍ରଭୋ ! ତୁମ୍ଭେ ଜଗତ୍‌ପିତା, ଜଗତର ରକ୍ଷାକର୍ତ୍ତା, ପୋଷଣକର୍ତ୍ତା ଓ ସର୍ବବିଧ ବିପଦ ନିବାରଣ କର୍ତ୍ତା ଅଟ ।

"ତ୍ରାହି ବିଷ୍ଣୋ ଜଗନ୍ନାଥ ତ୍ରାହିନଃ ପରମେଶ୍ୱର ।
ତ୍ୱାମୃତେ କମଳାକାନ୍ତକଃ ଶକ୍ତଃ ପରିରକ୍ଷଣେ ।।
ଅନ୍ତର୍ଯାମିନ୍ନମସ୍ତେଽସ୍ତୁ ସର୍ବତେଜୋନିଧେ ନମଃ ।।"

ହେ ବିଷ୍ଣୁ ! ଆମ୍ଭମାନଙ୍କୁ ରକ୍ଷାକର । ହେ ଲକ୍ଷ୍ମୀକାନ୍ତ ! ତୁମ୍ଭ ବ୍ୟତୀତ ଆମ୍ଭମାନଙ୍କୁ ରକ୍ଷା କରିବାକୁ କିଏ ସମର୍ଥ ହେବ ? ହେ ଅନ୍ତର୍ଯ୍ୟାମୀ ! ତୁମ୍ଭେ ସମସ୍ତ ତେଜର ନିଧି ସ୍ୱରୂପ । ତୁମ୍ଭଙ୍କୁ ପୁନଃ ପୁନଃ ନମସ୍କାର କରୁଅଛୁଁ ।

# ପୁରୁଷୋତ୍ତମ କ୍ଷେତ୍ରସ୍ଥ ଦେବଦେବୀମାନଙ୍କର ସ୍ତବ

## ୧ । ତୀର୍ଥରାଜ ମହୋଦଧି ପ୍ରତି ସ୍ତବ :—

ତୀର୍ଥରାଜ ନମସ୍ତୁଭ୍ୟଂ ଜଳରୂପାୟ ବିଷ୍ଣବେ ।
ଜୀବନାୟଚଜନ୍ତୂନାଂ ଷରନର୍ବାଣ ହେତବେ ।।
ଅଗ୍ନିଶ୍ଚ ଯୋନିଶ୍ଚଳାଚ ଦେହୋ ।
ରେତୋଧା ବିଷ୍ଣୋରମୃତସ୍ୟ ନାଭିଃ ।।
ଉଦ୍‌ପେମିତେ ରୂପମଘଙ୍କ ହେତୁ ।
ମାନନ୍ଦ ସଂଘାତ ମନୁ ପ୍ରବିଶ୍ୟ ।।

## ସ୍ନାନାନ୍ତେ ପ୍ରାର୍ଥନା । :—

ତ୍ୱମଗ୍ନିର୍ଜଗତାଂ ନାଥ ରେତୋଧାକାମଦୀପକଃ ।
ପ୍ରଧାନଂ ସର୍ବ ଭୂତାନାଂ ଜୀବାନାଂ ପ୍ରଭୁରବ୍ୟୟଃ ।।
ଅମୃତସ୍ୟାରଣି ସ୍ତ୍ୱଂହି ଦେବଯୋନିରପାଂପତେ ।
ବୃଜିନଂ ହରମେ ସର୍ବଂ ତୀର୍ଥରାଜ ନମୋସ୍ତୁତେ ।।
ଜନ୍ମକୋଟି ସହସ୍ରେଷୁ ଯତ୍ ପାପଂ ପୂର୍ବ ମର୍ଜିତଂ ।
ତଦ ଶେଷଂ ନୟଂ ଯାତୁ ଦେହି ମେ ବ୍ରହ୍ମ ଶାଶ୍ୱତଂ ।।

## ୨ । ଅକ୍ଷୟ ବଟ ପ୍ରଦକ୍ଷିଣ ପୂର୍ବକ ସ୍ତବ :—

ଓଁ ଅମରତ୍ୱଂ ମହାକଲ୍ପେ ବିଷ୍ଣୋରାୟତନଂ ମହତ୍ ।
ନ୍ୟଗ୍ରୋଧ ହରମେ ପାପଂ ବିଷ୍ଣୁରୂପ ନମୋସ୍ତୁତେ ।।
ନମୋସ୍ତ୍ୱ-ବ୍ୟକ୍ତ ରୂପାୟ ମହାପ୍ରଳୟ ସ୍ଥାୟିନେ ।
ଏକାର୍ଣ୍ଣୟାୟ ଜଗତାଂ କଳ୍ପବୃକ୍ଷାୟତେ ନମଃ ।

## ୩ । ଗରୁଡ଼ଙ୍କ ସ୍ତବ ଯଥା :—

ଛନ୍ଦୋମୟ ଜଗଦ୍ଧାମ ଯାନରୂପ ତ୍ରିବୃଦ୍ ବପୁଃ
ଯଜ୍ଞରୂପ ଜଗଦ୍‌ବ୍ୟାପିନ୍ ପ୍ରୀୟମାଣାୟତେ ନମଃ ।।
ନତ୍ୱୈବଂ ଗରୁଡ଼ଂ ପାପାନ୍ମୁଚ୍ୟତେଽନେକ ଜନ୍ମଜାତ

## ୪ । ଜଗନ୍ନାଥଙ୍କ ସ୍ତବ :—

ଦେବ ଦେବ ଜଗନ୍ନାଥ ସଂସାରାର୍ଣ୍ଣବ ତାରକ ।
ଭକ୍ତାନୁ ଗ୍ରାହକ ସଦା ରକ୍ଷମାଂ ପାପଯୋନିତଂ ।।

ଜୟାକୃଷ୍ଣ ଜଗନ୍ନାଥ ଜୟ ସର୍ବାଘନାଶନ ।
ଜୟାଶେଷ ଜଗଦ୍‌ବନ୍ଦ୍ୟ ପାଦାମ୍ବୁଜ ନମୋଽସ୍ତୁତେ ॥
ଜୟ ବ୍ରହ୍ମାଣ୍ଡକୋଟୀଶ ବେଦନିଃଶ୍ୱାସଧାରକ ।
ଅଶେଷ ଜଗଦାଧାର ପରମାତ୍ମନ୍ ନମୋଽସ୍ତୁତେ ॥
ଜୟ ବ୍ରହ୍ମେନ୍ଦ୍ର ରୁଦ୍ରାଦ୍ୟ ଦେବଦୈତ୍ୟ ପ୍ରଣତାଙ୍ଘ୍ରିକ ।
ଜୟାଽଖିଳ ଜଗଚ୍ଛାମନନ୍ତରୂପ ନମୋଽସ୍ତୁତେ ॥
ଜୟ ନିର୍ବ୍ୟାଜ କରୁଣା ପାଥୋଧେ ଦୀନବତ୍ସଳ ।
ଦୀନାନାଥୈକ ଶରଣ ବିଶ୍ୱସାକ୍ଷିନ୍ନମୋଽସ୍ତୁତେ ॥
ସଂସାର ସିନ୍ଧୁ ସଲିଳେ ମୋହାବର୍ତ୍ତେ ସୁଦୁସ୍ତରେ ।
ଷଡ୍‌ଭୂର୍ମି କୁଳ ଦୁଷ୍ପାରେ କୁକର୍ମ ଗ୍ରାହ ଦାରୁଣେ ॥
ନିରାଶ୍ରୟେ ନିରାଲମ୍ବେ ନିଃସାରେ ଦୁଃଖଫେନିଳେ ।
ତବମାୟା ଗୁଣୈର୍ବଦ୍ଧମବଶଂ ପତିତଂ ତତଃ ॥
ମାଂ ସମୁଦ୍ଧର ବେଗେନ କୃପାପାଙ୍ଗ ବିଲୋକନାତ୍ ।
ତତ୍ର ମଗ୍ନଂ ପୁରଶ୍ରେଷ୍ଠ ସ୍ୱପ୍ରକାଶ ପ୍ରକାଶକ ॥
ଏକ ଏବ ଜଗନ୍ନାଥ ବନ୍ଧୁସ୍ତ୍ୱଂ ଭବଭୀରୁଣାଂ ।
ତ୍ୱତ୍ ସୃଷ୍ଟୌ ତାଦୃଶୋ ନାସ୍ତି ଯୋ ଦୀନ ପ୍ରତିପାଳକଃ ।
ଅବତୀର୍ଣ୍ଣୋଽସି ଲୋକାନା ମନୁଗ୍ରହଧିୟା ବିଭୋ ।
ପୂର୍ଣ୍ଣକାମସ୍ୟ ତେ ନାଥ କିମନ୍ୟତ୍ କାରଣଂ କ୍ଷିତୌ ॥
ତ୍ୱତ୍ ପାଦ-ପଦ୍ମ ମାସାଦ୍ୟ ନଚନ୍ତ୍ରାଽସ୍ତି ଜଗତ୍ପତେ ।
କୃତନସ୍ତ୍ର ଚରଣାମ୍ବୁଜଂ ଚତୁର୍ବର୍ଗୈକ ସାଧନଂ ।
ଦର୍ଶନାତ୍ ସର୍ବ ଲୋକାନାଂ ସର୍ବ ବାଞ୍ଛାଫଳପ୍ରଦଂ ॥

## ୫ । ବଳଭଦ୍ରଙ୍କ ସ୍ତବ :—

ଜୟ ରାମ ସଦାରାମ ସଚ୍ଚିଦାନନ୍ଦ ବିଗ୍ରହ ।
ଅବିଦ୍ୟା ପଙ୍କ ବିଦ୍ୱିଷ୍ଟ ନିର୍ମଳାକୃତୟେ ନମଃ ॥
ଜୟାଖିଳ ଜଗଦ୍‌ଭାର ଧାରଣ ଶ୍ରମବର୍ଜିତ ।
ତାପତ୍ରୟ ବିକର୍ଷାୟ ହଳଂ କଳୟତେ ସଦା ॥
ପ୍ରପନ୍ନ ଦୀନତ୍ରାଣାୟ ସ୍ଥିତୈନେଷ ସରବୃଦ୍ଧ ।
ତ୍ୱମେବେଶ ପରଶେଷ କଲ୍ମଷ କ୍ଷାଳନ ପ୍ରଭୋ ॥
ପ୍ରପନ୍ନ କରୁଣା ସିନ୍ଧୋ ଦୀନବନ୍ଧୋ ଜଗତ୍ପତେ ।
ବିରଚର ଫଣାରେଣ ଧୃତାଶେଷଂ ବସୁନ୍ଧର ॥
ମାମୁଦ୍ଧରସ୍ୱାଦ୍ ଦୁଷ୍ପାରଦ୍ ଭବାମ୍ବୁଧେ ରପାରତଃ ।
ପଲ୍ଲପର୍ଣାଂ ଫରମ ପରମେଶ ନମୋଽସ୍ତୁତେ ॥

## ୬ । ସୁଭଦ୍ରାଙ୍କ ସ୍ତବ :—

ଜୟ ଦେବ ମହାଦେବ ପ୍ରସୀଦ ଭବତାରଣ ।
ସୃଷ୍ଟାମାର୍ଗି ତରତାଜସୃ ସନ୍ତୁ କାରଣ ।
କାର୍ଯ୍ୟଂ କାର୍ଯ୍ୟ ସ୍ୱରୂପାଣାଂ କାରଣାନାଂଚ କାରଣଂ ।
ଧାରଣଂ ଧାର୍ଯ୍ୟମାଣାନାଂ ତ୍ୱାମାଢଂ ପ୍ରଣମାମ୍ୟହଂ ।
ବକ୍ଷଃସ୍ଥଳ ସ୍ଥିତାଂ ବକ୍ଷୋଃ ଶମ୍ଭୋରଙ୍କାଙ୍ଗହାରିଣୀଂ ॥
ପଦ୍ମଯୋନି ମୁଖାବ୍ଜସ୍ଥାଂ ପ୍ରଣମାମି ଜଗତ୍ ସ୍ଥିତାଂ ।
ସୃଷ୍ଟି ସ୍ଥିତ ବିନାଶାଦ୍ୟ କର୍ମଣାଂ ଧରମାତ୍ମନଃ ॥
ତ୍ୱମେକା ଶକ୍ତିରତୁଳା ତ୍ୱାଂ ବିନା ସୋଽପିନେଶ୍ୱରଃ ।
ତ୍ୱାଂ ସର୍ବ ଲୋକ ଜନନୀଂ ବନ୍ଦମାତ୍ମାଂ ତପସ୍ୱିନୀଂ ॥
ସୁଭଦ୍ରାଂ ଭଦ୍ରରୂପାଣାଂ ମଙ୍ଗଳଭୂତାଂ ନମାମ୍ୟହଂ ॥

## ୭ । ସୁଦର୍ଶନଙ୍କ ସ୍ତବ :—

ସୁଦର୍ଶନ ମହାଜ୍ୱାଳ କୋଟି ସୂର୍ଯ୍ୟ ସମପ୍ରଭ ।
ଅଜ୍ଞାନ ତମିସ୍ରାନ୍ଧାନାଂ ବୈକୁଣ୍ଠାଧିପ୍ରଦର୍ଶକ ॥
ନମସ୍ତେ ନନ୍ଦ୍ୟ ବଳସଦା ବୈଷ୍ଣବାସ୍ତ୍ର ନକେତନ ।
ଅବାର୍ଯ୍ୟ ବୀର୍ଯ୍ୟଂ ଯଦ୍ରୂପଂ ବକ୍ଷୋ ସ୍ତତ୍ ପ୍ରଣମାମ୍ୟହଂ ॥

## ୮ । ବିମଳାଙ୍କ ସ୍ତବ :—

ଉଦ୍ୟତ୍‌କୋଟି କଳ୍ପଂ, ସୁଧାଂଶୁଧବଳାଂ, ଶ୍ୱେତାବ୍ଜମଧ୍ୟସ୍ଥିତାଂ
ବନ୍ଧ୍ୟଦ୍ଦ୍ୟୋତ ଶତାଢ୍ୟ ମୌଳି ଲଳିତାଂ-
ନେତ୍ରତ୍ରୟୋଦ୍ଭାସିତାଂ ।
ବଜ୍ରାଣାଂ ସ୍ଫଟିକାକ୍ଷମାଳା, ଭୁଜଗ ବ୍ୟାଖ୍ୟା ସୁଧାକୁଣ୍ଡିକାଂ
ଦେବୀଂ ବ୍ରହ୍ମ ଶିବେନ୍ଦ୍ର ବନ୍ଦ୍ୟ ବିମଳାଂ କ୍ଷେତ୍ରେଶ୍ୱରୀଂ ଚିନ୍ତୟେ ॥

## ୯ । ମହାଲକ୍ଷ୍ମୀଙ୍କ ସ୍ତବ :—

କାନ୍ତ୍ୟା କାଞ୍ଚନ ସନ୍ନିଭାଂ ହେମଗିରି ପ୍ରଖ୍ୟୈଶ୍ଚତୁର୍ଭିର୍ଗଜୈଃ
ହସ୍ତୋତ୍କ୍ଷିପ୍ତ ହିରଣ୍ମୟା ମୃତଘଟୈ ରାସିଚ୍ୟମାନାଂ ଶ୍ରିୟଂ ॥
ବିଭ୍ରାଣାଂ ବରମବ୍ଜ ଯୁଗ୍ମମଭୟଂ ହସ୍ତୈଃ କିରୀଟୋଜ୍ଜ୍ୱଳାଂ ।
କ୍ଷୌମା ବଦ୍ଧ ନିତମ୍ବ ବିମ୍ବ ଲଳିତାଂ ବନ୍ଦେଽରବିନ୍ଦସ୍ଥିତାଂ ॥

## ୧୦ । ମାର୍କଣ୍ଡେୟବଟତୀର୍ଥସ୍ଥ ଶଙ୍କରଙ୍କ ସ୍ତବ :—

ଅଭ ତୀକ୍ଷ୍ଣ ମହାକାୟ କଳ୍ପାନ୍ତ ଦହନୋପମ ।
ଭୈରବାୟ ନମସ୍ତୁଭ୍ୟ ମନୁଜ୍ଞା ଦାତୁ ମର୍ହସି ॥

ଓଁ ନମଃ ଶିବାୟ ଶାନ୍ତାୟ ସର୍ବପାପ ହରାୟଚ ।
ସ୍ନାନଂ କରୋମି ଦେବେଶ ମମ ନଶ୍ୟତୁ ପାତକଂ ॥
ସଂସାରସାଗରେ ମଗ୍ନଂ ପାପଗ୍ରସ୍ତମଚେତନଂ ।
ତ୍ରାହିମାଂ ଭଗନେତ୍ରଘ୍ନ ତ୍ରିପୁରାରେ ନମୋଽସ୍ତୁତେ ॥

## ୧୧ । ଇନ୍ଦ୍ରଦ୍ୟୁମ୍ନ ସରୋବରତଟସ୍ଥ ନରସିଂହଙ୍କ ପ୍ରାର୍ଥନା :—

ନରସିଂହ ନମସ୍ତୁଭ୍ୟଂ ସର୍ବଦେବ ଦେବୋତ୍ତମ ।
ସହସ୍ରଂ ବାଜିମେଧସ୍ୟ କ୍ରତୋଶ୍ଚକ୍ରେ ନୃପୋତ୍ତମଃ ॥
ଇନ୍ଦ୍ରଦ୍ୟୁମ୍ନ ପ୍ରସାଦାତ୍ତୁ ତସ୍ୟ କୁଣ୍ଡଙ୍ଗ ସମ୍ଭବେ ।
ସରସି ସ୍ନାତ୍ୱ ମାନ୍ୟାତୋ ମା ମହାପଦ୍ମ ପ୍ରଭୋ ॥

## ୧୨ । ଇନ୍ଦ୍ରଦ୍ୟୁମ୍ନ ସରୋବରେ ସ୍ନାନାର୍ଥେ ପ୍ରାର୍ଥନା :—

ଅଶ୍ୱମେଧାଙ୍ଗ ଗୋକୋଟି କ୍ଷୁର କ୍ଷୁଣ୍ଣ ମହୀତଳ ।
ତନ୍ମୂତ୍ର ଫେନ ଦାନାମ୍ବୁଃ ପୂର୍ଣ୍ଣତୀର୍ଥିଲ ପାବନ ॥
ସ୍ନାତ୍ୱା ତବାଗତଃ ପୁଣ୍ୟେ ସର୍ବତୀର୍ଥ ମୟେଜଲେ ।
ପୂର୍ବ ଜନ୍ମ ସହସ୍ରୋତ୍ଥଂ ପାପଂ ସ୍ନାନାତ୍ ବିମୋଚୟ ॥

---

# ପୁରୁଷୋତ୍ତମ କ୍ଷେତ୍ର ମାହାତ୍ମ୍ୟ ଗ୍ରନ୍ଥର ଉତ୍କଳ ଖଣ୍ଡର ଶ୍ରବଣ ଓ ପଠନର ବିଧି ଓ ଫଳଶ୍ରୁତି କଥା

ମୁନିମାନେ ପୁରାଣବକ୍ତା ଜୈମିନି ଋଷିଙ୍କୁ ପଚାରିଲେ, "ହେ ମହାତ୍ମନ ! ଆପଣଙ୍କ ଅନୁଗ୍ରହରୁ ଜଗଦୀଶଙ୍କ ମାହାତ୍ମ୍ୟ ଶ୍ରବଣ କରି କୃତାର୍ଥ ହୋଇଅଛୁଁ । ଏ ପୁରାଣ ଶ୍ରବଣର ବିଧି ବିଧାନ ଓ ପଠନ ଦ୍ୱାରା କି ଫଳ ଲାଭ ହେବ, ତାହା ଆମ୍ଭେମାନେ ଆପଣଙ୍କଠାରୁ ଶୁଣିବାକୁ ଇଚ୍ଛାକରୁଁ । ହେ ବାଗ୍ମିପ୍ରବର ! ଆପଣ ବେଦବେଦାନ୍ତ-ପାରଗ ଅଟନ୍ତି । ତେଣୁ ଆପଣ ଆମ୍ଭମାନଙ୍କ ପ୍ରତି ଦୟାକରି ତାହା ପ୍ରକାଶ କରନ୍ତୁ ।

ଏହା ଶୁଣି ଜୈମିନି ଋଷି କହିଲେ, "ହେ ମୁନିଶ୍ରେଷ୍ଠମାନେ ! ଆପଣମାନେ ପରମାନନ୍ଦରେ ଯାହା ପ୍ରଶ୍ନ କଲେ, ତାହା ମୁଁ ସଂକ୍ଷେପରେ କହୁଅଛି । ତାହା ସାବଧାନ ସହିତ ଶ୍ରବଣ କରନ୍ତୁ । ପୁରାଣ ଶ୍ରବଣର

ପ୍ରାରମ୍ଭରେ ଯଥାବିଧି ସଂକଳ୍ପ କରି ନିଜର ପୁରୋହିତ ଅଥବା ବେଦର ଏକଶାଖାବଲମ୍ବୀ କୌଣସି ଅଙ୍ଗ ବିକୃତ ନଥିବା ଶୁଦ୍ଧ ବଂଶ-ଜାତ ବ୍ରାହ୍ମଣଙ୍କୁ ନିଜ ବିତ୍ତ ଅନୁସାରେ ଉତ୍ତମ ବସ୍ତ୍ର ଅଳଙ୍କାର ଚନ୍ଦନାଦି ସହ ପୁରାଣ ପାଠପାଇଁ ବରଣ କରିବ । ଉକ୍ତ ବ୍ରାହ୍ମଣ ଶାନ୍ତସ୍ୱଭାବବିଶିଷ୍ଟ ଓ ଶାସ୍ତ୍ରାର୍ଥ ତତ୍ତ୍ୱ ବିଷୟରେ ଅଭିଜ୍ଞତାସମ୍ପନ୍ନ ହୋଇଥିବା ଉଚିତ । ପରେ କରଯୋଡ଼ି ବ୍ରାହ୍ମଣଙ୍କୁ ପ୍ରାର୍ଥନା କରିବ; ଯଥା:—

ତ୍ୱଂ ବିଷ୍ଣୁ ର୍ବିଷ୍ଣୁରେବତ୍ୱଂ ନିତ୍ୟଭେଦଃ କଦାଚନ ।
ନିର୍ବିଘ୍ନଂ ମେ ଭବତ୍ୱେବ ତ୍ୱତ୍ ପ୍ରସାଦାତ୍ ପ୍ରଶିଦମେ ॥

ତତ୍ପରେ ବ୍ରାହ୍ମଣଙ୍କୁ ବହୁମୂଲ୍ୟ ଆସନରେ ଉପବେଶନ କରାଇ ଗଳା ଓ ମସ୍ତକରେ ପୁଷ୍ପମାଳା ଅର୍ପଣ କରି ସର୍ବାଙ୍ଗରେ ଚନ୍ଦନ ଅନୁଲେପନ କରିବ । କାରଣ ସେ ସମୟରେ ବରଣ କରିଥିବା ବ୍ରାହ୍ମଣଙ୍କୁ ବ୍ୟାସଦେବଙ୍କ ତୁଲ୍ୟ ମଣିବା ବିଧେୟ । ତଦନନ୍ତର ଉକ୍ତ ବ୍ରାହ୍ମଣଙ୍କ କର୍ତ୍ତୃକ ସାକ୍ଷାତ ବିଷ୍ଣୁ ସ୍ୱରୂପ ପୁସ୍ତକକୁ ସ୍ନାନ କରି ଚନ୍ଦନ ପୁଷ୍ପ ଏବଂ ଭକ୍ଷ୍ୟ ଭୋଜ୍ୟାଦି ନାନାବିଧ ଉପଚାର ଦ୍ୱାରା ବ୍ୟାସଦେବଙ୍କ ପୂଜା କରାଇବ । ଏହିପରି ପ୍ରତ୍ୟହ ସନ୍ଧ୍ୟାରେ ବ୍ରାହ୍ମଣ ଓ ପୁସ୍ତକକୁ ଅର୍ଚ୍ଚନା କରୁଥିବ । ହେ ମୁନିମାନେ ! ଶ୍ରୋତାମାନଙ୍କ ଲକ୍ଷଣ କହୁଅଛି, ଶ୍ରବଣ କରନ୍ତୁ । ପ୍ରଥମତଃ ଶ୍ରବଣାର୍ଥିମାନଙ୍କ ଉପବେଶନ ପାଇଁ ଯଥାଯୋଗ୍ୟ ଆସନ ରଚନା କରି ସ୍ୱୟଂ ଅପର ଏକ ସ୍ୱତନ୍ତ୍ର ଆସନରେ ଉପବେଶନ କରିବ । ଯେହେତୁ ବ୍ୟାସ ସମ ପାଠକ ବ୍ରାହ୍ମଣଙ୍କ ସମ୍ମୁଖରେ ତାଙ୍କ ପରି ସମ୍ମାନ ଆସନରେ ଅନ୍ୟମାନେ ଉପବିଷ୍ଟ ହେବା ବିଧେୟ ନୁହେଁ । ଏପରି ବିବେଚନା କରି ପରିଷ୍କୃତ ଭୂତଳରେ ବନ୍ଧୁମାନଙ୍କ ସହିତ ଉପବେଶନ କରିବ । ହେ ମୁନିବରମାନେ !

ପୁରାଣେ ବ୍ରାହ୍ମଣେ ଚୈବ ଦେବେଚ ମନ୍ତ୍ରକର୍ମଣି ।
ତୀର୍ଥେ ବୃଦ୍ଧସ୍ୟ ବଚନେ ବିଶ୍ୱାସଃ ଫଳଦାୟକଃ ।

ଅର୍ଥାତ୍:—ପୁରାଣ, ବ୍ରାହ୍ମଣ, ଦେବତା, ମନ୍ତ୍ରକର୍ମ, ତୀର୍ଥ ଓ ବୃଦ୍ଧଙ୍କ ବଚନରେ ବିଶ୍ୱାସ କରିବାହିଁ ଫଳଦାୟକ । ଏଣୁ ସମ୍ପ୍ରତି ପୁଣ୍ୟ କାର୍ଯ୍ୟରେ ବିଶ୍ୱାସହିଁ ମୂଳ କାରଣ ବୋଲି ଜାଣିବ । ପୁରାଣ ଶ୍ରବଣ ସମୟରେ ପାଷାଣ୍ଡାଦିମାନଙ୍କ ସହିତ ସମ୍ଭାଷଣ, ବୃଥା ଆଳାପ ଓ ସର୍ବବିଧ ବୈଷୟିକ ଚିନ୍ତା ବର୍ଜ୍ଜନ କରିବ । ଏପରିକି ବିଧାନତଃ

ସାନନ୍ଦରେ ପୁରାଣ ଶ୍ରବଣ କରିବା ଉଚିତ, ଏବଂ ପ୍ରତ୍ୟହ ପାଠ ସମାପ୍ତି ପରେ କରତାଳାଦି ଦ୍ୱାରା 'ଜୟକୃଷ୍ଣ ଜଗନ୍ନାଥ ହରି' ଇତ୍ୟାଦି ନାମ ଉଚ୍ଚାରଣ କରି ଉଚ୍ଚୈଃସ୍ୱରରେ ହରିନାମ କୀର୍ତ୍ତନ କରିବ । ହେ ଋଷିମାନେ ! ଏହାପରି ଭଗବାନ ବିଷ୍ଣୁଙ୍କ ପ୍ରୀତି ନିମନ୍ତେ ପ୍ରତ୍ୟହ କରିବା ବିଧେୟ । ତହିଁଉତ୍ତାରୁ ଗ୍ରନ୍ଥ ସମାପ୍ତ ହେଲେ ଭଗବାନ ବିଷ୍ଣୁଙ୍କ ପ୍ରୀତି ନିମନ୍ତେ ସଭକ୍ତିରେ ଏହି ପାଠକ ବ୍ରାହ୍ମଣଙ୍କୁ ବସ୍ତ୍ର ମାଲ୍ୟ ଚନ୍ଦନ ଓ ଭୂଷଣାଦି ଦ୍ୱାରା ଅଳଙ୍କୃତ କରି ନିଜ ସାମର୍ଥ୍ୟ ଅନୁସାରେ ଯଥାବିଧି ଦକ୍ଷିଣା ଦେବ । ଯେଉଁମାନଙ୍କର ଯେ ପ୍ରକାର ଦକ୍ଷିଣା ଦେବା ଉଚିତ ସମ୍ପ୍ରତି ତାହା କହୁଅଛି, ଶ୍ରବଣ କରନ୍ତୁ । ରାଜାମାନେ ସୁଲକ୍ଷଣଯୁକ୍ତ ହସ୍ତୀଙ୍କୁ ଅଳଙ୍କାରରେ ସଜାଇ ଦାନ କରିବେ ଏବଂ ସାଧାରଣ କ୍ଷତ୍ରିୟମାନେ ରାଜାଙ୍କ ପରି ବିଭବ ଥିଲେ ହସ୍ତୀଙ୍କୁ ଦାନ କରି ପାରନ୍ତି । ଯେହେତୁ କ୍ଷତ୍ରିୟମାନେ ରାଜତୁଲ୍ୟ ବୋଲି ଶାସ୍ତ୍ରରେ କଥିତ ଅଛି । ବ୍ରାହ୍ମଣମାନେ ସଭକ୍ତିରେ ପୁସ୍ତକ, ବିଷ୍ଣୁପୂଜାର ସାମଗ୍ରୀ ସୁବର୍ଣ୍ଣ, ରଜତ, ଧାନ୍ୟ ଓ ବସ୍ତ୍ର ଯଥାଶକ୍ତି ଦାନ କରିବେ । ଧର୍ମପରାୟଣ ବୈଶ୍ୟମାନେ ସିନ୍ଧୁ-ଦେଶୋଦ୍ଭବ ଅଶ୍ୱକୁ ରତ୍ନରେ ଭୂଷିତ କରି ଦାନ କରିବେ ଓ ସୁଲକ୍ଷଣା ସବତ୍ସା ଦୁଗ୍ଧବତୀ ଧେନୁ ଏବଂ ସୁବର୍ଣ୍ଣ, ବସ୍ତ୍ର ଇତ୍ୟାଦି ପ୍ରଦାନ କରିବେ । ଶୂଦ୍ରମାନେ ସାନନ୍ଦମନରେ ବସ୍ତ୍ର, ସୁବର୍ଣ୍ଣ, ଧାନ, ରତ୍ନ ଓ ନାନା-ଳଙ୍କାରରେ ଭୂଷିତ ବାଳଗର୍ଭିଣୀ ଦୁଗ୍ଧବତୀ ଗୋମାନଙ୍କୁ ଦାନ କରିବେ । ହେ ଋଷିମାନେ ! ପାଠକ ତହିଁରେ ସନ୍ତୁଷ୍ଟ ହେବେ । ନିଜ ବିଭବ ଶକ୍ତି ଅନୁସାରେ ଦକ୍ଷିଣା ଦେବା ବିଧେୟ । କଦାପି ଦକ୍ଷିଣା ଦେବାରେ ବିତ୍ତଶାଠ୍ୟ କରିବ ନାହିଁ । ଯେହେତୁ ଉପଯୁକ୍ତ ଦକ୍ଷିଣାହୀନ ହେଲେ ପୁଣ୍ୟ କାର୍ଯ୍ୟ ସବୁ ନିଷ୍ଫଳ ହୁଏ ଏବଂ ଅସୁରମାନେ ଦକ୍ଷିଣାବିହୀନ କର୍ମର ଫଳ ହରଣ କରିଥାନ୍ତି । ହେ ଋଷିମାନେ ! ଦକ୍ଷିଣା ଦାନରେ ଦୁରିତମାନଙ୍କ କ୍ଷୟ ହୋଇଥାଏ । ଏଣୁ ଶାସ୍ତ୍ରଜ୍ଞମାନେ ତାହାକୁ ଦକ୍ଷିଣା ବୋଲି କହିଅଛନ୍ତି । ତତ୍ପରେ ଯଥାଶକ୍ତି ଅନୁସାରେ କର୍ପୂର, ଘୃତ ଓ ପାୟସଯୁକ୍ତ ଅମୃତତୁଲ୍ୟ ସୁସ୍ୱାଦୁ ଷଡ଼୍ବିଧ ରସପୂର୍ଣ୍ଣ ଅନ୍ନପାନାଦି ଦ୍ୱାରା ବ୍ରାହ୍ମଣମାନଙ୍କୁ ଭୋଜନ କରାଇ ନିଜ ଶକ୍ତି ଅନୁସାରେ ସ୍ୱର୍ଣ୍ଣ ବସ୍ତ୍ରାଦି ଦାନ କରିବ । ଏହା ପରେ ଜୈମିନି ଋଷି କହିଲେ, ପୁରାଣ ଶ୍ରବଣର ବିଧିବିଧାନ କଥନ କଲି । ସମ୍ପ୍ରତି ଅନ୍ୟ କେଉଁ ବିଷୟ ଶ୍ରବଣ କରିବାକୁ ଇଚ୍ଛା କର ?"

ଏହା ଶୁଣି ମୁନିମାନେ କହିଲେ, "ହେ ବ୍ରହ୍ମନ୍ ! ଅହୋ ! ଆମ୍ଭମାନଙ୍କର କି ମହାଭାଗ୍ୟ ଘଟିଅଛି । ଯହିଁରୁ ଆମ୍ଭେମାନେ ଆପଣଙ୍କର ମୁଖପଦ୍ମରୁ ପୁରାଣ ବିଷୟରେ ସର୍ବପାପବିଧ୍ୱଂସୀ ସାଙ୍ଗୋପାଙ୍ଗ ସମୁଦାୟ ବିଧାନ ଓ ତାହାର ଫଳ ଶ୍ରବଣ କରି ପାରିଅଛୁଁ । ଏଣୁ ଆମ୍ଭେମାନେ ଇହସଂସାରରେ ଧନ୍ୟ ଓ ପୁଣ୍ୟବାନ୍ ଅଛୁଁ । ଯଥାର୍ଥରେ ଆମ୍ଭମାନଙ୍କ ସର୍ବବିଧ କ୍ଳେଶ ଦୂର ହେଲା । ହେ ମୁନେ ! ସମ୍ପ୍ରତି ଆମ୍ଭେମାନେ ଏ ପୁରାଣ ଶ୍ରବଣର ଫଳ ପାଇବା ପାଇଁ ନିଜ ନିଜ ଶକ୍ତି ଅନୁସାରେ ଆପଣଙ୍କୁ କିଞ୍ଚିତ ଦକ୍ଷିଣା ଦେବାକୁ ଇଚ୍ଛା କରୁଁ । ଆପଣ ସାନନ୍ଦରେ ଗ୍ରହଣ କରନ୍ତୁ ।" ଏହା କହି ଦରିଦ୍ର ଶ୍ରୋତା ଋଷିମାନେ ଧନରତ୍ନାଦି ଦାନରେ ଅସମର୍ଥ ହୋଇ ପୁରାଣବକ୍ତା ଜୈମିନି ଋଷିଙ୍କୁ ସମିଧ କୁଶ ପୁଷ୍ପ ଫଳ ଓ ଅକ୍ଷତାଦି ଦାନକରି ପରମ ଆନନ୍ଦିତ ହୃଦୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ବାସ କରିବା ନିମିତ୍ତ ଯାତ୍ରା କଲେ ଏବଂ ଯଥା ସମୟରେ ସକଳ ଋଷିମାନେ ମୋକ୍ଷପଦ ଲାଭ କଲେ ।

ସମାପ୍ତ

# ଶୁଦ୍ଧିପତ୍ର

| ପୃଷ୍ଠା | ପଂକ୍ତି | ଅଶୁଦ୍ଧ | ଶୁଦ୍ଧ |
|---|---|---|---|
| ୲ | ୧ | ଅର୍ଥାତ | ଅର୍ଥାତ୍ |
| ,, | ୧୧ | ସ୍ଵତଂ | ସ୍ଵତ |
| ୳ | ୩ | ଲ୍ପ | ରହି |
| ,, | ୨୭ | ପଣ୍ଡତ | ପଣ୍ଡିତ |
| ୴ | ୨୨ | ଏଷ୍ମା | ଏଷ୍ମି |
| ୨ | ୮ | ଚେଷମନ୍ତ୍ରା | ଚେଷ ମନ୍ତ୍ରା |
| ୩ | ୧୪ | ଶକ | କର |
| ୪ | ୯ | ସୃଷ୍ଟୁ | ସୃଷ୍ଟି |
| ,, | ୨୭ | ଚିହ୍ନତ | ଚିହ୍ନିତ |
| ,, | ୨୭ | ବଶାଷ୍ଟ | ବଶିଷ୍ଟ |
| ,, | ୨୮ | ଦର୍ତ୍ତୃରୂପ | କର୍ତ୍ତୃରୂପ |
| ,, | ୧୯ | ପ୍ରାଣବର୍ଗ | ପ୍ରାଣିବର୍ଗ |
| ,, | ୧୯ | ଧ୍ରିଷ୍ଟଦ୍ୟ | ଧୃଷ୍ଟେଦ୍ୟ |
| ,, | ୨୩ | ନେକ | ଅନେକ |
| ,, | ୨୪ | ନାଳପର୍ବତ | ନୀଳ ପର୍ବତ |
| ,, | ୨୫ | ସ୍ଥନ | ସ୍ଥାନ |
| ୫ | ୪ | କୁଣ୍ଡ ତଟରେ | କୁଣ୍ଡ ତଟରେ |
| ,, | ୫ | ଦ୍ଵାସ୍ର | ଦ୍ଵାର |
| ,, | ୨୦ | ଶ୍ରୁଷ୍ଠ | ଶ୍ରୁତି |
| ,, | ୨୨ | ନିର୍ଷତ | ନିର୍ଷିତ |
| ୮ | ୧ | ଭବିଷ୍ୟତ୍ | ଭବିଷ୍ୟତ |
| ,, | ୨ | ଭଗଦାନ୍ | ଭଗବାନ |
| ,, | ୩ | ଏକ ସ୍ଵରୂପ | ଏକ ସ୍ଵରୂପ୍ |
| ,, | ୫ | ଗିଠିତ | ଗଠିତ |
| ,, | ୧୪ | ସାତ୍ତ୍ୱିକାଗଣୀଃ | ସାତ୍ତ୍ୱକାଗ୍ରଣୀଃ |
| ,, | ୧୫ | ଆସୀତ | ଆସୀତ୍ |
| ,, | ୨୭ | ଶ [illegible]ଃ | ସ [illegible]ଃ |
| ,, | ୨୮ | ସ୍ଵାଇଦଃସପ୍ରଜାଃ | ସ୍ଵା[illegible]ସଃପ୍ରଜାଃ |
| ,, | ୨୯ | ତହ୍ମଣ୍ୟ | ବହ୍ମଣ୍ୟଃ |
| ,, | ୩୦ | ଧର୍ମ | ଧର୍ମ |
| ୯ | ୫ | ବୃଷ୍ଟ | ବୃଷ୍ଟି |
| ,, | ୨୭ | ପୁରୁଷୋତ୍ତମ | ପୁରୁଷୋତ୍ତମ |

| | | | |
|---|---|---|---|
| ,, | ୧୨ | ତହାର | ତାହାର |
| ,, | ୧୨ | ଅଧିକରୀ | ଅଧିକାରୀ |
| ,, | ୨୫ | ଭୂମିପ୍ରାପ୍ତ | ଭୂମିପ୍ରାପ୍ତି |
| ,, | ୨୧ | ପୁରୁଷୋତ୍ତମ | ପୁରୁଷୋତ୍ତମ |
| ୧୧ | ୨୧ | ସନିକଟ | ସନ୍ନିକଟ |
| ୧୪ | ୨ | ପଣ | ଅଂପଣ |
| ,, | ୪ | ଭଗବାନ୍ | ଭଗବାନ |
| ୧୫ | ୨ | ତା' ପରେ | ତା ପରେ |
| ,, | ୩ | ଦବାବସନରେ | ଦବାବସାନରେ |
| ,, | ୩ | କ୍ଲାନ୍ତଶନ୍ତ | କ୍ଲାନ୍ତଶ୍ରାନ୍ତ |
| ,, | ୯ | କ୍ଷଧା | କ୍ଷୁଧା |
| ,, | ୧୪ | ଶବରମନେ | ଶବରମାନେ |
| ୧୬ | ୬ | ଭୃଙ୍ଗ | ଭୃଙ୍ଗି |
| ୧୭ | ୩ | ବିଶ୍ୱବନ୍ଧୁଙ୍କୁ | ବିଶ୍ୱ ବନ୍ଧୁଙ୍କୁ |
| ୧୮ | ୮ | ପ୍ରତଃ | ପ୍ରାତଃ |
| ,, | ୯ | ପରେମ ହାରାଜାଙ୍କ | ପରେ ମହାରାଜାଙ୍କ |
| ୧୯ | ୨୨ | ପ୍ରଦକ୍ଷଣ | ପ୍ରଦକ୍ଷିଣ |
| ୨୦ | ୨ | ମଳା | ମାଳା |
| ,, | ୨୨ | ବ୍ରହ୍ମଦ | ବ୍ରହ୍ମାଦ |
| ୨୨ | ୯ | ଦେବତାମନେ | ଦେବତାମାନେ |
| ୨୩ | ୨୦ | ହାସ୍ୟାଦୀପକ | ହାସ୍ୟୋଦ୍ଦୀପକ |
| ୨୪ | ୬ | କେୟୁର | କେୟୂର |
| ,, | ୭ | ଐଶ୍ୱର୍ଯ୍ୟ | ଐଶ୍ୱର୍ଯ୍ୟ |
| ,, | ୧୪ | ଲାବଣ୍ୟ | ଲାବଣ୍ୟ |
| ,, | ୧୫ | ଚକ୍ଷୁପତ | ଚକ୍ଷୁପାତ |
| ୨୬ | ୬ | ମଣ୍ଡବଙ୍କ | ମାଣ୍ଡବଙ୍କ |
| ,, | ୧୮ | ସଲଭ | ସୁଲଭ |
| ୨୭ | ୧୪ | ସାତ୍ତ୍ୱକ | ସାତ୍ତ୍ୱିକ |
| ,, | ୨୮ | ତଥଯାତ୍ରା | ତୀର୍ଥଯାତ୍ରା |
| ୨୯ | ୧୬ | ଅର୍ଥାତ | ଅର୍ଥାତ୍ |
| ,, | ୧୨ | ପଥିଯୁକ୍ତ | ପଥିସୁକ୍ତ |
| ୩୦ | ୧୯ | ପ୍ରସ୍ୱ | ପ୍ରିସ୍ୱ |
| ୩୧ | ୧୨ | କାନ୍ଧୁର | କାନ୍ଥର |

| | | | |
|---|---|---|---|
| ୩୨ | ୧୮ | ଭ୍ରସ୍ୟବାନ୍ | ଭଗଂବାନ |
| ୩୫ | ୧୯ | ଭଗବାନ୍ | ଭଗବାନ |
| ୩୬ | ୨୫ | ପ୍ରତଷ୍ଠା | ପ୍ରତିଷ୍ଠା |
| ୩୮ | ୧ | ଭୂଷତ | ଭୂଷିତ |
| ,, | ୨୨ | ଷଡଙ୍ଗ ଦ୍ରୁମାନେ | ଷଡଙ୍ଗ ଦ୍ରୁମାନେ |
| ୪୧ | ୧ | ସାଦ୍ୱାସିଜ | ସାଦ୍ୱସିଜ |
| ,, | ୮ | ଦାଷଣରେ | ଦକ୍ଷିଣରେ |
| ,, | ୨୨ | ମଖବ୍ରତ | ମୁଖବ୍ରତ |
| ୪୩ | ୨ | ଚତୁଦ୍ଧା | ଚତୁର୍ଦ୍ଧା |
| ,, | ୨୫ | ଯାବତ | ଯାବତ |
| ,, | ୨୬ | ଶସ୍ତ୍ରପାଣି | ଶସ୍ତ୍ରପାଣି |
| ୪୪ | ୯ | କୃତ୍ୟତେଽଥ | କୃତ୍ୟଂତେଽଥ |
| ୪୫ | ୨୨ | ଗ୍ରଗେ୍ୟ | ଗ୍ରକେ୍ୟ |
| ୪୬ | ୧୧ | ମୁର୍ଚ୍ଛିତଂ | ମୂର୍ଚ୍ଛିତଂ |
| ୪୯ | ୨୨ | ଅର୍ଥାତ | ଅର୍ଥାତ୍ |
| ,, | ୨୪ | ଯୋଗଚ୍ଛିସ୍ଥା | ଯୋଗଚ୍ଛିଦ୍ମା |
| ୫୦ | ୭ | ପବତେ | ପ୍ଳବତେ |
| ୫୧ | ୧୦ | ସମ୍ମଳତ | ସମ୍ମିଳତ |
| ,, | ୨୮ | ତନ୍ତ୍ରପ୍ର | ପ୍ରସ୍ତୁତ |
| ୫୨ | ୨୬ | ଇନ୍ଦ୍ରଦ୍ୟୁମ | ଇନ୍ଦ୍ରଦ୍ୟୁମ୍ନ |
| ,, | ,, | ନରଲୋକବାଷା | ନରଲୋକବାସୀ |
| ୫୩ | ୨୫ | ବନ୍ଧୋଣ | ବ୍ରହ୍ମଣୋ |
| ,, | ୨୨ | ଅଥଷ୍ଟାଶ୍ର | ଅଧଷ୍ଟାଶ୍ର |
| ,, | ୨୨ | ବୋଦାଧ୍ୟୟନ | ବେଦାଧ୍ୟୟନ |
| ,, | ୨୫ | ଭୂବନୋଽହମଃ | ଭୁବନୋଽହମଃ |
| ,, | ୨୯ | ଯୋଗେଶ୍ୱରଃ | ଯୋଗେଶ୍ୱରଃ |
| ,, | ୨୯ | ଯୋଗିଚନ୍ତ୍ୟ | ଯୋଗିଚନ୍ତ୍ୟ |
| ୫୪ | ୧ | ସନ୍ଧ୍ୟା | ସନ୍ଧ୍ୟା |
| ,, | ୨ | ରୁଦ | ରୁଦ୍ର |
| ,, | ୯ | ରୁଦ୍ରରୂପରେ | ରୁଦ୍ରରୂପରେ |
| ,, | ୨୦ | ଘଜ | ଘଜା |
| ୫୫ | ୯ | ତୃଷ୍ଟିଭବରେ | ତୃଷ୍ଟିଭବରେ |
| ୫୯ | ୭ | ବହୁବଗୈକ | ବହୁବର୍ଗୈକ |

| | | | |
|---|---|---|---|
| ୬୯ | ୮ | ଏ.ୀ ମୋ | ଏ.ୀ ମୋ ପ୍ରତି |
| ୭୨ | ୧ | ଭକ୍ତଃ | ଭକ୍ତାଃ |
| ୭୨ | ୩ | ବଙ୍ଗେ | ଭଙ୍ଗେ |
| ,, | ୧୯ | ମଂ | ମାଂ |
| ,, | ୨୨ | ପ୍ରକୁବାଥାଃ | ପ୍ରକୁର୍ବାଥାଃ |
| ,, | ୨୩ | ପପାତ୍ | ପାପାତ୍ |
| ,, | ୨୨ | ଭଦ୍ରାତ୍ମା | ଭଦ୍ରାତ୍ମା |
| ୭୭ | ୪ | ଫଳ | ଫଳଂ, |
| ,, | ୯ | ଶରୀରେ | ଶରୀରରେ |
| ୭୫ | ୧୨ | ଲିପ୍ତ | ଲିପ୍ତ୍ |
| ୭୭ | ୧୨ | ଅଙ୍କ୍ଷ | ଅଙ୍କ୍ଷ |
| ୭୮ | ୨ | ଚତୁପୁ ଗେ | ଚତୁର୍ଯୁଗେ |
| ,, | ୨ | ଦେବତ୍ | ଦୈବତତ୍ |
| ,, | ୨ | ଦ୍ଵିତେତ | ଦ୍ଵିତ୍ୟତେ |
| ,, | ୫ | ସାନ୍ଦ୍ରଂ | ସ୍ୱାନ୍ଦ୍ରଂ |
| ୭୮ | ୮ | ୬ୈବତେ | ଦୈବତେ |
| ,, | ୯ | ଗୃହ ସ | ଗୃହସ୍ଥ |
| ,, | ୧୯ | ସାପ୍ନଂ | ସ୍ୱାପ୍ନଂ |
| ,, | ୨୪ | ୧୯୬୮୭୨୯୫୩ | ୧,୯୬୮,୭୨୯,୦୫୩ |
| ,, | ୨୫ | ଛତ୍ରାଣ | ଛତ୍ରାଣି |
| ୭୯ | ୧୩ | ସାମ୍ଯଂ | ସାମ୍ଯ ତଂ |
| ,, | ୨୭ | ନ୍ତରରେ | ନ୍ତରେ |
| ,, | ୯ | ପୂଷ | ପୂଷ୍ୟ |
| ୮୦ | ୨ | ଊନବିଂଶ | ଊନବିଂଶ ହଜାର |
| ,, | ୫ | ଜ୍ଞାନିଦ୍ୟୁମ୍ନ | ଜ୍ଞାନିଦ୍ୟୁମ୍ନ |
| ,, | ୨୨ | ପୁନର୍ନିର୍ମାଣ | ପୁନଃ ନିର୍ମାଣ |
| ୮୨ | ୧୯ | ତ୍ରିକୋଣଂ | ତ୍ରିକୋଣଂ |
| ୮୭ | ୨ | ଏଦ୍ଵି | ଏଦ୍ଵଠାରେ |
| ,, | ୫ | ଭଗବାନ୍ପିତଂ | ଭଗବାନ୍‌ପିତଂ |
| ୮୩ | ୨୨ | ନମିଳତ | ନମୀଳତ |
| ୮୫ | ୨ | ପଢ଼ିବେ | ପାଢ଼ିବେ |
| ,, | ୫ | ମହାସଂମୂଢ଼ | ମହାସମ୍ମୂଢ଼ |
| ୮୭ | ୪ | କ୍ଷିପନ୍ତଂଚ | କ୍ଷିପନ୍ତଂଚ |

| | | | |
|---|---|---|---|
| ୮୭ | ୧ | ଡ୍ୟଜନ୍ତ | ତ୍ୟଜନ୍ତ୍ୟ |
| ,, | ୪ | ସ୍ତ୍ରି ନିଂଗ୍ରଯୋନି | ସ୍ତ୍ରି ନିଂଜ୍ଯୋଝ |
| ୮୭ | ୨୮ | ବୋଧପାନ୍ତ୍ଂ | ବୋଧୋପାନ୍ତ୍ଂ |
| ୮୮ | ୧୦ | ଡଡକ୍ଷଣ | ତତ୍କ୍ଷଣ |
| ,, | ୧୮ | ମୋହ୍ବଃସୌ | ମୋହୋଃସୌ |
| ୯୦ | ୪ | ମୂର୍ଣ୍ଣିଚ | ମୂର୍ଚ୍ଛୋଂଚ |
| ,, | ୧୦ | ଡଥାଚ | --------- |
| ୯୨ | ୨ | ସଂପର୍କୋଃତ | ସମ୍ପର୍କୋଃହ |
| ୯୩ | ୧୮ | ସୁଦ୍ଧାନ୍ତଃ | ଶୁଦ୍ଧାନ୍ତଃ |
| ୯୪ | ୨୨ | ସାନ୍ନିଧ୍ୟଂ | ସାନ୍ନିଧ୍ୟଂ |
| ୯୭ | ୧୧ | ଚ୍ଛେଦନ | ଚ୍ଛେଦନ |
| ୯୮ | ୧୧ | ଅର୍ଥାତ୍ | ଅର୍ଥାତ |
| ୧୦୦ | ୧୦ | ମିନ୍ତ | ଭକ୍ତ |
| ୧୦୨ | ୭ | ଗୀଳଦ | ନୀଳାଦ |
| ,, | ୯ | ପଦ୍ମାସନା | ପଦ୍ମାସନ |
| ,, | ୧୦ | ବନ୍ଧ୍ର | ବ୍ରନ୍ଧ୍ର |
| ,, | ୨୯ | ରଘ୍ୟା | ରଘ୍ବ୍ୟଂ |
| ୧୦୩ | ୧୮ | ପୁଣ୍ୟବ୍ରକାକ୍ଷଂ | ପୁଣ୍ୟବ୍ରକାକ୍ଷଂ |
| ୧୦୪ | ୨୦ | କୃଷ୍ଣ | କୃଷ୍ଣ |
| ,, | ୨୧ | ବ୍ୟଘ୍ନଂ | ବ୍ୟଘ୍ନଃ |
| ୧୦୫ | ୫ | ଦ୍ଵାସାନ୍ଧଦ | ଦ୍ଵାସ୍ୟା ଧ୍ଵେ |
| ,, | ୮ | ଦେ ମାବେଷ୍ଣୁ | ଦେ ମାବେଷ୍ଣୁ |
| ,, | ୨୧ | ଗୃହୁବଦନା | ଗୃହୁବଦନା |
| ୧୦୬ | ୧୪ | ତୁଥ୍ୟା | ତୁଥ୍ୟାଂ |
| ,, | ୨୪ | ଦାତାରଗଃ | ନତାବଗଃ |
| ୧୦୭ | ୧୪ | ଜବର୍ଷ୍ୟତେ | ନବର୍ଷ୍ୟଂଚ |
| ୧୦୮ | ୪ | ଶ୍ରଦ୍ଧାଂ | ନିକ୍ରାଂ |
| ,, | ୮ | ପ୍ରାଣେ | ପ୍ରାଣେଃ |
| ,, | ୨୧ | ଭୂମେବ | ଭୂମେବ |
| ୧୦୯ | ୧ | ଚନ୍ଦ୍ରପୁର | ଚନ୍ଦ୍ରପୁର |
| ,, | ୮ | ପ୍ରାବନ୍ତ | ପ୍ରାପ୍ତବନ୍ତ |
| ,, | ୧୯ | ହ୍ଲଷି | ହ୍ଲଷୀ |
| ୧୧୦ | ୪ | ତାଦ୍ଧନଃ | ସାଦ୍ଧନଃ |

| | | | |
|---|---|---|---|
| ” | ୯ | ଇନ୍ଦ୍ରୋମ୍ପୁଂ | ଜନ୍ମୋତ୍ସବଂ |
| ” | ୧୦ | ପାଳାକଃ | ପାଳକଃ |
| ” | ୧୨ | ସୃଷ୍ଟିରେ | ସୃଷ୍ଟିରେ |
| ” | ୧୯ | କମଳାକାନ୍ତକଃ | କମଳାକାନ୍ତ କଃ |
| ୨୨୨ | ୨ | ଦେବ୍ଦେଢାଧା | ଦେବଦେଢାଧା |
| ” | ୧୫ | ଯତ | ଯତ୍ |
| ” | ୨୫ | ଜନ୍ମକାତ | ଜନ୍ମଜାତ୍ |
| ୨୨୨ | ୧ | ଜନ୍ମାକୃଷ୍ଣ | ଜନ୍ମକୃଷ୍ଣ |
| ” | ୨ | ପାଦାମ୍ବୁଜ | ପାଦାମ୍ଭୋଜ |
| ” | ୪ | ପରମାତ୍ମ | ପରମାତ୍ମନ୍ |
| ” | ୧୨ | ଗୁଣ | ଗୁଣେ |
| ” | ୧୯ | ଜଗତପଟେ | ଜଗତ୍ ପଟେ |
| ” | ୨୦ | ଚରଣାମ୍ବୁଜଂ | ଚରଣାମ୍ଭୋଜ |
| ” | ୨୨ | ସଦେ | ସଦା |
| ” | ୨୭ | ଷରକ୍ଷ୍ନ | ସରେନ୍ଦ୍ର |
| ” | ୩୦ | ଧୃଷ୍ଟାରଦ | ଧୃଷ୍ଟାରବ୍ |
| ” | ୩୦ | ଭବାମ୍ବୁଧେ | ଭବାମ୍ଭୋଧେ |
| ୨୨୩ | ୯ | ବଷ୍ଣମାୟା | ବିଷ୍ଣୁମାୟା |
| ” | ୨୪ | ବୈ ଷ୍ଟବାକ୍ଷ | ବୈଷ୍ଟବାସ୍ତ |
| ” | ୨୫ | ଯଦୁଯଂ | ଯଦୁପଂ |
| ” | ୨୦ | ଶିବେନ୍ଦ୍ର | ଶିବେନ୍ଦ୍ର |
| ” | ୨୦ | ମାଳା | ମାଳ |
| ” | ୨୯ | ମନ୍ଦ୍ରଙ୍କ | ମନ୍ଦ୍ରଙ୍କଂ |
| ୨୨୪ | ୭ | ନତୋଧ୍ମଃ | ନୃତୋଷ୍ମଃ |
| ” | ୧୩ | ସ୍ନାନ୍ତି | ସ୍ନାନ୍ତିଂ |
| ” | ୧୪ | ସ୍ୱଦେବ | ସ୍ୱଦେବୋଚିଥଂ |
| ୨୨୫ | ୮ | ପ୍ରକ୍ଷିଦ୍ଦେ | ପ୍ରଷୀଦଦୈ |
| ” | ୧୩ | ସାକ୍ଷଚ | ସାକ୍ଷାତ୍ |
| ୨୨୬ | ୧୯ | ଚର୍ଦ୍ଧେ | ଯର୍ଦ୍ଧେ |
| ୨୨୭ | ୧୩ | ସକଳ | ——— |

# ବିଜ୍ଞାପନ

ଛପାଖର୍ଚ୍ଚରୁ ମଧ୍ୟ ଊଣା କରି ପ୍ରଚାରାର୍ଥେ ନାମ ମାତ୍ର ମୂଲ୍ୟରେ
ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କ ଲିଖିତ
ନିମ୍ନୋକ୍ତ ବହି ପ୍ରସ୍ତୁତ ଅଛି ।

[ ୧ ]

## ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରସ୍ଥ ପଞ୍ଚତୀର୍ଥ ବର୍ଣ୍ଣଃ

(ଜ୍ଞାତବ୍ୟ ସୂଚନା ଓ ଶ୍ରୀମନ୍ଦିରସ୍ଥ ଦେବତାମାନଙ୍କ ଦର୍ଶନ କ୍ରମ ସହିତ )

ମୂଲ୍ୟ—୫ ୦ ।

[ ୨ ]

## ନିଘଣ୍ଟୀ

( ହୋ, ଓଡ଼ିଆ ଓ ଇଂରାଜୀ ଭାଷାର ଶିକ୍ଷାପାଇଁ ଡିକ୍ସନାରି ସହିତ )

ମୂଲ୍ୟ—୫ ୦ ।

[ ୩ ]

## ଶ୍ରୀ ପୁରୁଷୋତ୍ତମ କ୍ଷେତ୍ରର ଇତିହାସ ଓ ମାହାତ୍ମ୍ୟ

ମୂଲ୍ୟ—୧୲

—ପ୍ରାପ୍ତିସ୍ଥାନ—

କଟକ ଓ ପୁରୀର ବିଖ୍ୟାତ ସମସ୍ତ ବହି ଦୋକାନ